ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ



*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**

**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**

**ଇଂ ପ୍ରଭାତ କୁମାର ନନ୍ଦ**

ସମ୍ପାଦିକା

**ଅନସୂୟା ନନ୍ଦ**



**୬୪ ବର୍ଷ, ଚତୁର୍ଥ ସଂଖ୍ୟା**

**ନଭେମ୍ବର, ୨୦୧୪**

**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**

**ପ୍ରତିଖଣ୍ଡ-- ୧୫ ଟଙ୍କା**

*ଯୋଗାଯୋଗ*

**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**

*ଦୂରଭାଷ* : ୯୮୬୧୦୬୪୮୯୧,
୨୪୨୨୫୯୭, ୨୪୨୦୦୭୫

email :
nandaanasuya@hotmail.com
www:odisha publication.com

ଅନ୍ୟାନ୍ୟ ବିଭାଗର ଲେଖକ--
ଗଜେନ୍ଦ୍ର ବେହେରା

## ଗଳ୍ପ ଓ ଜୀବନୀ


| | | |
|---|---|---|
| ଗୋଛାଏ ସୁନେଲି କେଶର.... | ଡା. ମହାପାତ୍ର ଆନନ୍ଦଶଙ୍କର ମିଶ୍ର | ୫ |
| ଗଜମୂର୍ଖ | ଶଶିକାନ୍ତ ବେହେରା | ୧୩ |
| ଚିକୁନ୍ ଏବଂ ମଙ୍ଗଳ ଗ୍ରହର ମଣିଷ | ଗୋବିନ୍ଦ ଚନ୍ଦ୍ର ନାୟକ | ୧୬ |
| ଧୂପକାଠି | ତନ୍ମୟ ମିଶ୍ର | ୧୯ |
| ଅତିଥି ସତ୍କାର | ସୁଜାତା ସାହୁ | ୨୩ |
| ତିନି ପିଲାଙ୍କର ଦରଦୀ ପ୍ରାଣ | ଡଃ ସତ୍ୟ ରାୟ | ୨୫ |
| ମଣିଷ କେବେ ପଶୁ ନୁହେଁ | ଡକ୍ଟର ତ୍ରିନାଥ ପଟ୍ଟନାୟକ | ୩୩ |
| କଟରା କଟରୀ | ସୁଷମା ମିଶ୍ର | ୩୫ |
| ବୁଦ୍ଧିମାନ କଙ୍କଡ଼ା | କୁମାରୀ ଚିକୁନ୍ ପଣ୍ଡା | ୩୮ |
| ମୁକ୍ତିର ଉପାୟ | ଦେବେନ୍ଦ୍ରନାଥ ପ୍ରଧାନ | ୪୧ |
| କୁଆଟିଏ କୁଆ ରୂପରେ ହିଁ ରହୁ | ........... | ୪୫ |
| ନାଗାର୍ଜୁନ | ନନ୍ଦକିଶୋର ସିଂହ | ୪୬ |


## କବିତା


| | | |
|---|---|---|
| କହିବି ଗପ | ଜୟନ୍ତିକା | ୯ |
| ସୁଖରେ କାଟିବା କାଳ | ମାଧବାନନ୍ଦ ପଣ୍ଡା | ୧୫ |
| ବରଷା, ଶୀତ | କୁମୁଦଲତା ମହାନ୍ତି | ୨୨ |
| କାକରା ଅପା | ସନ୍ତୋଷ କୁମାର ପଣ୍ଡା | ୨୯ |
| କଲରା | ଶମ୍ଭୁନାଥ ଦାସ | ୩୬ |
| ଗୋହିରି ପାଟ | ସୁକାନ୍ତ କୁମାର ସେଠୀ | ୪୪ |
| ବେହେଲା | ରାମକୃଷ୍ଣ ନନ୍ଦ | ୪୭ |
| ଗଙ୍ଗାର ଜଳ | ରାଜକିଶୋର ପାଢ଼ୀ | ୫୦ |


## ଭ୍ରମଣ କାହାଣୀ


| | | |
|---|---|---|
| କିମ୍ବଦନ୍ତୀରେ ଶ୍ରୀଶ୍ରୀ ନୃସିଂହନାଥ | କୁଞ୍ଜବିହାରୀ ସାହୁ | ୨୬ |


## ଜ୍ଞାନ-ବିଜ୍ଞାନ


| | | |
|---|---|---|
| ଶବ୍ଦଧନ୍ଦାର ଶହେ ବର୍ଷ | ଫକୀର ଚରଣ ପାଢ଼ୀ | ୧୦ |
| ସେମାନେ ତ ମୋ ପରିବାରର.... | ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ | ୨୧ |
| ଇବୋଲା ଆତଙ୍କ | କାଞ୍ଚିନାରାୟଣ ମହାନ୍ତି | ୩୧ |


## ମନୋରଞ୍ଜନ


| | | |
|---|---|---|
| ବୁଦ୍ଧି ପରୀକ୍ଷା | ......... | ୧୮ |
| ସାଧାରଣ ଜ୍ଞାନ ପରୀକ୍ଷା | ଜ୍ୟୋତିରଂଜନ ବିଶ୍ୱାଳ | ୨୦ |
| ଭାବି ଦେଖନ୍ତୁ | ଅନସୂୟା ନନ୍ଦ | ୪୮ |
| ଶବ୍ଦ ଧନ୍ଦା | ବିଧୁର କୁମାର ଦାଶ | ୫୩ |



## ଆମ ଚିଠି ମୁଣିରୁ

**କନ୍ଧବେରେଣୀ, ଚମ୍ପେଶ୍ୱର, କଟକରୁ ଶ୍ରୀ ଶ୍ରୀନିବାସ ଖଟୁଆ**- ଏ ମାସର ସଂସାରରେ ଧଳା ଠେକୁଆର ସମୁଦ୍ର ଅତିକ୍ରମ, ଚକରା ମୁଣ୍ଡରେ ଚଡ଼କ ବହୁତ ଶିକ୍ଷଣୀୟ ହୋଇଛି । ସେହିଭଳି 'ପଖିଆ' କବିତାଟି ମଧ୍ୟ ଚମତ୍କାର । ତା'ବ୍ୟତୀତ ଲେଖନୀର ପାଠଶାଳା, ଭାବି ଦେଖନ୍ତୁ, ଚିତ୍ର ଓ ମଞ୍ଚ ଓ ଜ୍ଞାନବିଜ୍ଞାନ ସ୍ତମ୍ଭରେ ସ୍ଥାନ ପାଇଥିବା ଲେଖାଗୁଡ଼ିକରୁ ଅନେକ କଥା ଜାଣି ହେଲା ।

**ଷ୍ଟେସନ୍ ସ୍କୋୟାର, ୟୁନିଟ୍-୩, ଭୁବନେଶ୍ୱରରୁ ବିଦ୍ୟୁତପ୍ରଭା ଗନ୍ତାୟତ**--ପତ୍ରିକାଟି ଯେ ୬୪ ବର୍ଷରେ ପଦାର୍ପଣ କରିଛି, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଲେଖନୀର ପାଠଶାଳା ପିଲାଠାରୁ ବଡ଼ ପର୍ଯ୍ୟନ୍ତ ସମସ୍ତଙ୍କ ପାଇଁ ଶିକ୍ଷଣୀୟ ଓ ଉପାଦେୟ । ରାମକୃଷ୍ଣ ନନ୍ଦଙ୍କ ପରି ସାହିତ୍ୟ-ତପସ୍ୱୀଙ୍କର ମାର୍ଗ ଦର୍ଶନରେ ଆମ ଓଡ଼ିଆ ଭାଷାର ଶିଶୁ ସାହିତ୍ୟ ବିଭାଗଟି ଆଶାନୁରୂପ ଉପଲବ୍ଧି ଏ ଯାଏଁ ହାସଲ କରିପାରିନାହିଁ, ଦୁଃଖର କଥା ।

**ପଟ୍ଟାମୁଣ୍ଡାଇରୁ ବାସୁଦେବ ଥାଟୋଇ**--'ସଂସାର' ମାସର ପ୍ରଥମ ଦିନରେ ପ୍ରାପ୍ତ ହୋଇଥାଏ, ଯାହା ଅନ୍ୟ ଶିଶୁପତ୍ରିକା ଠାରୁ ଭିନ୍ନ ମନେହୁଏ । ଏ ମାସରେ 'କୁମ୍ଭୀର କାନ୍ଦଣା' ଲେଖାଟି ଚମତ୍କାର ହୋଇଛି । ସଂପୃକ୍ତ ଲେଖିକାଙ୍କୁ ଧନ୍ୟବାଦ । ଅନ୍ୟ ସମସ୍ତ ପୃଷ୍ଠା ଚମତ୍କାର ।

ଏକଷଠିତମ ଜନ୍ମ ବାର୍ଷିକରେ
    ସଂସାରକୁ ମୋର ବଧେଇ
ଶିଶୁ ସାହିତ୍ୟରେ ଜ୍ଞାନ-ବିଜ୍ଞାନକୁ
    ଏମିତି ଦେଉଥା ଗଢେଇ ।
ଚଲାପଥେ ଲୋଟୁ ଫୁଲର ଫଗୁଣ
    ଏମିତି ଆସୁ ଏ ଆସର
ପ୍ରତି ମଣିଷର ପ୍ରାଣକୁ ଛୁଇଁ ଯା
    ସଂସାରରେ ମୋର ସଂସାର ।

## ** ଅଭିନନ୍ଦନ **

ଆମ ପରିଚିତ ଲେଖକ ତଥା ସାହିତ୍ୟିକ ଶ୍ରୀ କାଞ୍ଚି-ନାରାୟଣ ମହାନ୍ତିଙ୍କୁ ତାଙ୍କର ସାମଗ୍ରିକ କୃତି ପାଇଁ 'ବ୍ରଜମୋହନ ସ୍ମୃତି ସଂସଦ' ତରଫରୁ ସମ୍ମାନିତ କରାଯାଇଛି । ତାଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରିବା ସହିତ ତାଙ୍କର ସାହିତ୍ୟିକ କୃତି ଚିର ଜାଜ୍ୱଲ୍ୟମାନ ରହୁ --ଏତିକି କାମନା ।

**--ସଂସାର ପରିବାର**

**ଅରୁଣୋଦୟ ନଗର, କଟକରୁ ଡ. ଅଜିତାନନ୍ଦ ଗୋସ୍ୱାମୀ**- -ଏ ମାସରେ ପ୍ରକାଶିତ 'କୁବେରଙ୍କ ଗର୍ବ ଚୁନା ହେଲା' ଲେଖାଟିର ଆଦ୍ୟରେ 'କୁବେର ସାଗରରେ ଅତି ଧନୀ ଅଟନ୍ତି' ପରିବର୍ତ୍ତେ 'ସ୍ୱର୍ଗପୁରରେ କୁବେର ଧନୀ ଥିଲେ' ବୋଲି ପ୍ରକାଶ ପାଇଛି । 'କଳା ବାଙ୍ଗରା' ଲେଖାଟି ଅପ୍ରାସଙ୍ଗିକ ମନେହେଲା ।

**ଭଣ୍ଡାରୀ ପୋଖରୀରୁ ରମାକାନ୍ତ ବେହେରା**-- ଏହି ପତ୍ରିକାରୁ ମୁଁ ଜାଣିଲି, ଏହା ୬୦ ବର୍ଷର ପତ୍ରିକା । ପ୍ରକୃତରେ ଏଭଳି ଏକ ପୁରାତନ ପତ୍ରିକା ନିୟମିତ ପାଠକମାନଙ୍କ ନିକଟରେ ପହଞ୍ଚି ପାରୁଛି, ତାହା ହିଁ ଗୌରବର କଥା । ଈଶ୍ୱର ଏଥିପାଇଁ ସଂସାର-ପରିବାରକୁ ସହାୟ ହୁଅନ୍ତୁ-- ଏତିକି ପ୍ରାର୍ଥନା ।

---

★ ଚିଠିପତ୍ର ବା ଟଙ୍କା ପଠାଇବାବେଳେ ଗ୍ରାହକ ନମ୍ବର ଓ ପିନ୍‌କୋର୍ଡ୍ ସହ ଠିକଣା ଲେଖିବାକୁ ଅନୁରୋଧ । ଏହାଦ୍ୱାରା ସେମାନଙ୍କ ସହିତ ଯୋଗାଯୋଗ କରିବା ସହଜ ହେବ ।

★ ଏଜେଣ୍ଟମାନଙ୍କ 'ସଂସାର' ବାବାଦ ଦେୟ ୨୦ ତାରିଖ ପୂର୍ବରୁ ଆମ ପାଖରେ ପହଞ୍ଚିବା ଆବଶ୍ୟକ, ନଚେତ୍ ପତ୍ରିକା ପଠାଇବା ସମ୍ଭବ ହେବ ନାହିଁ ।

--ପରିଚାଳକ

**ଏ ମାସର ପ୍ରଚ୍ଛଦ-** କିମ୍ବଦନ୍ତୀରେ ଶ୍ରୀଶ୍ରୀ ନୃସିଂହନାଥ ବିଷୟରୁ ପ୍ରଦତ୍ତ ।

**ପୃଥିବୀ ବିଖ୍ୟାତ ରହସ୍ୟ କାହାଣୀ**

# ଗୋଛାଏ ସୁନେଲି କେଶର ରହସ୍ୟ

ଡାକ୍ତର ମହାପାତ୍ର ଆନନ୍ଦଶଙ୍କର ମିଶ୍ର

ଲଣ୍ଡନର ବେକର ଷ୍ଟ୍ରିଟ୍‌ସ୍ଥିତ ବିଖ୍ୟାତ ଗୋଏନ୍ଦା ଶାର୍ଲକ ହୋମସ୍‌ଙ୍କ ବସାଘରେ ବସିଥାନ୍ତି ହୋମସ୍ ଏବଂ ତାଙ୍କର ଅଭିନ୍ନ ହୃଦୟର ବନ୍ଧୁ ଡା. ଓ୍ୱାଟ୍‌ସନ୍ ଓ ଜଣେ ତରୁଣୀ ମିସ୍ ହଣ୍ଟର୍ । ତାଙ୍କର ସମସ୍ୟା ବିଷୟରେ ହଣ୍ଟର୍ ହୋମସ୍‌ଙ୍କୁ କହୁଥାନ୍ତି--

"ପାଞ୍ଚବର୍ଷ ଧରି ଜଣେ ଭଦ୍ରବ୍ୟକ୍ତିଙ୍କ ପିଲାଙ୍କୁ ପଢ଼ାଉଥିଲି; କିନ୍ତୁ ଭଦ୍ରଲୋକଙ୍କ ବଦଳି ହୋଇଯିବାରୁ ମୁଁ ଏବେ ବେକାର । ଗତ ସପ୍ତାହରେ ଚାକିରି ପାଇଁ ଗୋଟିଏ ଇଣ୍ଟରଭ୍ୟୁ ଦେଇଥିଲି । ମି. ରୁକ୍ୟାସଲ ନାମକ ଜେଣେ ମୋଟା ଭଦ୍ରବ୍ୟକ୍ତି ମୋର ଇଣ୍ଟର୍ଭ୍ୟୁ ନେଲେ । ମୁଁ ରୁମ୍ ଭିତରକୁ ପଶିବାମାତ୍ରେ ଗଦ୍‌ଗଦ୍ ହୋଇ ତାଙ୍କ ସହଯୋଗୀ ମହିଳାଙ୍କୁ କହିଲେ, "ୟା'ଙ୍କରି ଭଳି ଝିଅଙ୍କୁ ଖୋଜୁଥିଲି ।" ତା'ପରେ ମୋତେ ଚାହିଁ କହିଲେ, "ମୋ ଛଅ ବର୍ଷର ଝିଅକୁ ପଢ଼ାଇବେ । ମୁଁ ଆପଣଙ୍କୁ ବର୍ଷକୁ ଶହେ ପାଉଣ୍ଡ୍ ଦେବି ।"

ହଠାତ୍ ଏପରି ଲୋଭନୀୟ ପ୍ରସ୍ତାବ ଶୁଣି ଖୁସି ଲାଗିଲା; କିନ୍ତୁ ପରମୁହୂର୍ତ୍ତରେ ଡର ଲାଗିଲା । ଭଦ୍ରଲୋକଙ୍କୁ ପଚାରିଲି, "ଆପଣ କେଉଁଠି ରହୁଛନ୍ତି ?"

--ମଫସଲର ଗାଁ ହାମ୍ପସାୟାରରେ । ପୁରାତନ ରାଜାମାନଙ୍କର ସ୍ଥାନ ଉଇନ୍‌ଚେଷ୍ଟାରରୁ ପାଞ୍ଚମାଇଲ ସେପଟକୁ । ଏ ଚାକିରି କଲେ କିନ୍ତୁ ମୋ ଖିଆଲୀ ପ୍ରକୃତିର ସ୍ତ୍ରୀଙ୍କ କଥା ମାନିବାକୁ ପଡ଼ିବ ।

--କି ରକମର ଖିଆଲ ?

--ଧରନ୍ତୁ, ସେ ଆପଣଙ୍କୁ ଗୋଟିଏ ପୋଷାକ ପିନ୍ଧିବାକୁ ଦେଇ ଗୋଟାଏ ଜାଗାରେ କିଛି ସମୟ ବସିବାକୁ କହିବେ । ତାଙ୍କ କଥା ଆପଣ ମାନିଯିବେ ।

ମନେମନେ ଭାବିଲି ଭଦ୍ରମହିଳା ପାଗଳ ନୁହନ୍ତି ତ !

--କିମ୍ବା ଧରନ୍ତୁ ମୋ ସ୍ତ୍ରୀ ଆପଣଙ୍କର ଏ ଯେଉଁ ଲମ୍ବା ସୁନେଲି କେଶ ରଖିଛନ୍ତି, ତାକୁ କାଟି ଛୋଟ କରିବାକୁ କହିବେ... ।

ମୁଁ ତ ଆକାଶରୁ ପଡ଼ିଲି । କହିଲି, "ସେଟା ସାର୍ ସମ୍ଭବ ନୁହେଁ । ମୋତେ କ୍ଷମା କରିବେ-- ।" ଦୁହିଙ୍କଠାରୁ ବିଦାୟ ନେଇ ରୁମ୍ ବାହାରକୁ ଆସିଲି । ଏମିତି ଭଲ ଚାକିରିଟା ଛାଡ଼ିଦେଲି ବୋଲି କିଛି ଦିନ ଧରି ମନ ଖରାପ ହେଲା । ଗୁଡ଼ାଏ ଧାରକରଜ ହେଲାଣି । କିନ୍ତୁ ଚତୁର୍ଥ ଦିନ ଏଇ ଚିଠିଟା ପାଇଲି । ଚିଠିଟା ସେ ହୋମସ୍‌ଙ୍କ ହାତକୁ ବଢ଼ାଇଦେଲେ ।

ହୋମସ୍ ପଢ଼ିଲେ ଯେ ମିଃ ରୁକ୍ୟାସଲ ଆଉ ଗୋଟିଏ ପାଉଣ୍ଡ ଦରମା ବଢ଼ାଇ ଚାକିରିରେ ଯୋଗ ଦେବାକୁ ଅନୁରୋଧ କରିଛନ୍ତି । ଚିଠି ପଢ଼ି ସାରିବା ପରେ ହୋମସ୍ କହିଲେ, "ଏ ଧରଣର ଚାକିରି ପାଇଁ ଦରମାଟା ଖୁବ୍ ବେଶୀ ଜଣାପଡୁଛି । ଠିକ୍ ଅଛି । ଆପଣ ଦିଅନ୍ତୁ । କିଛି ଅସୁବିଧା ହେଲେ ମୋତେ ସଙ୍ଗେ ସଙ୍ଗେ ଟେଲିଗ୍ରାମ୍ କରିବେ ।"

ପନ୍ଦରଦିନ ପରେ ମିସ୍ ହଣ୍ଟରଙ୍କ ଟେଲିଗ୍ରାମ ପହଞ୍ଚିଲା-- "ଉଇନ୍‌ଚେଷ୍ଟାରରେ ଥିବା 'ବ୍ଲାକ୍‌ସୋୟାନ୍'

ହୋଟେଲକୁ କାଲି ଦ୍ୱିପ୍ରହରରେ ନିଶ୍ଚୟ ଆସିବେ। ଅସୁବିଧାରେ ପଡ଼ିଛି।"

ଟ୍ରେନ୍ ଆଗେଇ ଚାଲିଛି। ଗୋଟାକ ପରେ ଗୋଟାଏ ଗାଁ ପାରି ହେଉଛି। ଶେଷରେ 'ଉଇନଚେଷ୍ଟର' ଷ୍ଟେସନ୍‌ରେ ଟ୍ରେନ୍ ଠିଆ ହେଲା। ଷ୍ଟେସନ୍‌ର ଖୁବ୍ ପାଖରେ 'ବ୍ଲାକ୍ ସୋୟାନ୍' ହୋଟେଲ। ମିସ୍ ହଣ୍ଟର୍ ଅପେକ୍ଷା କରିଥିଲେ। ହୋମସ୍ ଲକ୍ଷ୍ୟ କଲେ, ସେ ୟା ଭିତରେ ତାଙ୍କ ଲମ୍ବ ସୁନେଲି କେଶକୁ ଛୋଟ ଛୋଟ କରି କାଟି ଦେଇଛନ୍ତି । ପଚାରିଲେ, "କଣ ହୋଇଛି କୁହନ୍ତୁ ତ ?"



--ଶୀଘ୍ର ଫେରିବି ବୋଲି ମି. ରୁକ୍ୟାସଲଙ୍କୁ କଥା ଦେଇ ଆସିଛି। ଏଣୁ ସଂକ୍ଷେପରେ କହୁଛି। ମିଃ ରୁକ୍ୟାସଲ ଓ ତାଙ୍କ ସ୍ତ୍ରୀ ପାଖରୁ ଖରାପ ବ୍ୟବହାର ପାଇନାହିଁ। ଘରଟାର ପରିବେଶ ମଧ୍ୟ ଭଲ। ଚାରିପଟେ 'କପରବିଚ୍' ଗଛ। ହତା ଭିତରେ ଗୁଡ଼ାଏ ଖାଲି ଜାଗା। ଫାଟକକୁ ଲାଗିଛି ଗୋଟାଏ ପଡ଼ିଆ । ପଡ଼ିଆଟା ଶହେ ଗଜ ଦୂରରେ ଥିବା ବଡ଼ ରାସ୍ତାକୁ ଛୁଇଁଛି। କୋଠାଟା ପୁରୁଣା- ନାଆଁ 'କପରବିଚ୍'। ମି. ରୁକ୍ୟାସଲଙ୍କ ସ୍ତ୍ରୀ ହେଉଛନ୍ତି ଦ୍ୱିତୀୟ ପକ୍ଷର। ସନ୍ତାନ ବୋଇଲେ ୫-୬ ବର୍ଷର ଝିଅଟିଏ । ପ୍ରଥମ ସ୍ତ୍ରୀଙ୍କର କୋଡ଼ିଏ ବର୍ଷର ଝିଅଟିଏ ମଧ୍ୟ ଅଛି, ନାଆଁ ଏଲିସ୍ । ସେ ବର୍ତ୍ତମାନ ଆମେରିକାରେ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ରହିଛି।

ଏଠାକୁ ଆସିବାର କିଛି ଦିନ ପରେ ଦିନେ ସକାଳେ ମି. ରୁକ୍ୟାସଲ ମୋତେ କହିଲେ, "ମୋ ସ୍ତ୍ରୀଙ୍କ ଇଚ୍ଛା ଆପଣ ବିଛଣା ଉପରେ ରଖାହୋଇଥିବା ନୀଳ ପୋଷାକଟା ପିନ୍ଧି ଏଇ ଝରକା ପାଖରେ ଥିବା ଚଉକିଟାରେ କିଛି ସମୟ ବସନ୍ତୁ।" ଅଦ୍ଭୁତ ଖିଆଲ ! ଆଗରୁ କଥା ତ ଦେଇଛି, ତେଣୁ ସେ ପୋଷାକଟା ପିନ୍ଧି ଦୁଇଘଣ୍ଟା କାଳ ଝରକାକୁ ପିଠି କରି ମୋତେ ବସିବାକୁ ପଡ଼ିଲା। ଝରକା ତଳୁ ପଡ଼ିଆ ଆରମ୍ଭ। ପଡ଼ିଆ ଶେଷରେ ଯଦି କେହି ଥିବେ, ମୋତେ ସେ ଦେଖିପାରିବେ; କିନ୍ତୁ ମୁଁ ତାଙ୍କୁ ଦେଖିପାରିବି ନାହିଁ। ଦିନେ ଦି'ଦିନ ନୁହେଁ, କେତେ ଦିନ ଧରି ମୋତେ ଝରକା ପାଖରେ ବସିବାକୁ ପଡ଼ିଲା। ମୋର ସନ୍ଦେହ ହେଲା, ପଡ଼ିଆ ପାଖ ଫାଟକ ପାଖରେ ଠିଆ ହୋଇ ପ୍ରତିଦିନ ମୋତେ କିଏ ଦେଖୁଛି ନିଶ୍ଚୟ । ଦିନେ ଗୋଟିଏ ଭଙ୍ଗା ଆଇନା କାଚ ଲୁଚାଇନେଇ



ଗୋପନରେ ଦେଖିଲି ଜଣେ ଯୁବକ ଫାଟକ ପାଖରେ ଠିଆ ହୋଇ ମୋତେ ଚାହିଁଛି।

ଯା'ର କିଛି ଦିନ ପରର କଥା। ମି:ରୁକ୍ୟାସଲ ଓ ତାଙ୍କ ସ୍ତ୍ରୀ କୁଆଡ଼େ ଯାଇଥାନ୍ତି। ଜିନିଷପତ୍ର ରଖିବା ପାଇଁ ମୋତେ ଗୋଟିଏ ତିନିଥାକିଆ ଆଲମାରୀ ଦିଆ-ହୋଇଥାଏ। ତାର ତଳ ଥାକରେ ଚାବି ପଡ଼ିଥାଏ। ହଠାତ୍ ଇଚ୍ଛା ହେଲା, ସେ ଥାକରେ କ'ଣ ଅଛି ଦେଖିବି। ଚାବିନେଛାରୁ ଚାବିକାଠି ନେଇ ଖୋଲିବାକୁ ଚେଷ୍ଟାକଲି। ଆଶ୍ଚର୍ଯ୍ୟ, ଗୋଟିଏ ଚାବିକାଠିରେ ସେ ଚାବିଟା ଖୋଲିଗଲା। ଆଉ ତା ଭିତରେ ଯାହା ଦେଖିଲି .... ! ମି. ହୋମସ୍ ଆପଣ ତ ଗୋଏନ୍ଦା ସମ୍ରାଟ୍, ସେଥିରେ କ'ଣ ଥିଲା କହନ୍ତୁ ତ ?

ମି. ହୋମସ୍ ଧୀର ଅଥଚ ସ୍ପଷ୍ଟ ସ୍ୱରରେ କହିଲେ, ''ଗୋଛାଏ ସୁନ୍ଦର ସୁନେଲି କେଶ।'' ପାଟି କରି ଉଠିଲେ ମିସ୍ ହଣ୍ଟର, ''ସତରେ ଆପଣ ସର୍ବଜ୍ଞ ମି. ହୋମସ୍ !'' ହୋମସ୍ ଶାନ୍ତ ଭାବରେ କହିଲେ, ''ଆପଣଙ୍କ କାହାଣୀ ଶେଷ କରନ୍ତୁ।''

କପରବିଚ୍ କୋଠାରେ ମି. ରୁକ୍ୟାସଲଙ୍କ ଭୃତ୍ୟ ମି. ଟୋଲାର୍ ଓ ତା ସ୍ତ୍ରୀ ମଧ୍ୟ ରହନ୍ତି। ମି. ଟୋଲାର୍ ବଦ୍ଧ ମାତାଲ। ତା' ଛଡ଼ା ସେଠି ଗୋଟିଏ ଘରେ ବନ୍ଧା ହୋଇ ରହିଛି ଏକ ଭୟଙ୍କର ହିଂସ୍ର ଡାହାଳ କୁକୁର --ଫିଉରିଓ । ଟୋଲାର୍ ତାକୁ ସମ୍ଭାଳେ। ଏପରିକି ମି. ରୁକ୍ୟାସଲ ମଧ୍ୟ ତାକୁ ଭୟ କରନ୍ତି। କୁକୁରଟା ଅଯତ୍ନରେ ସବୁବେଳେ ବନ୍ଧା ହୋଇଥିବା ଫଳରେ ଅଧିକ ହିଂସ୍ର ହୋଇଯାଇଥାଏ। ଆଉ ଏକ ବିଶେଷ କଥା ହେଲା, ଏଇ କୋଠାର ଚାରି ମହଲା ଉପରେ ଥିବା ଏକ ଅବ୍ୟବହୃତ କୋଠରିକୁ ମିସେସ୍ ଟୋଲାର୍ ଦୁଇ ତିନି ଥର ଯାଏ।''



ସବୁକଥା ଶୁଣିବା ପରେ ମି. ହୋମସ୍ ପଚାରିଲେ, ''ମି. ରୁକ୍ୟାସଲ ଓ ତାଙ୍କ ସ୍ତ୍ରୀ ବାହାରକୁ ଯାଆନ୍ତି ତ ?'' ମିସ ହଣ୍ଟର୍ କହିଲେ, ''ହଁ, ପ୍ରତି ରବିବାର ଓପରଓଳି ତିନିଟାବେଳେ ଟିକିଏ ଦୂରରେ ଥିବା ଏକ ଗାଁ'କୁ ତାଙ୍କ ଶାଶୁଙ୍କ ପାଖକୁ ଯାଆନ୍ତି।''

--ଠିକ୍ ଅଛି। କାଲି ରବିବାର। ଆମେ ଦୁଇ ବନ୍ଧୁ ଚାରିଟାବେଳେ ଯାଇ 'କପରବିଚ୍'ରେ ପହଞ୍ଚିବୁ। ଆପଣ ଚାକରାଣୀ ମିସେସ୍ ଟୋଲାରଙ୍କୁ ଷ୍ଟୋର ଘରେ ବନ୍ଦ କରି ରଖିଥିବେ। ଆମେ ଏଲିସଙ୍କୁ ମୁକ୍ତ କରିବାକୁ ଚେଷ୍ଟା କରିବୁ।

--ଏଲିସ୍ ! ତା'ହେଲେ ତାହାରି କେଶ ଥିଲା ଆଲମାରୀର ସେ ଥାକରେ।

--ହଁ ଏଲିସ୍‌କୁ ଏମାନେ ଲୁଚାଇ ରଖିଛନ୍ତି ତିନି ମହଲା ଉପରେ। ସମ୍ଭବତଃ ବେଶ୍ କିଛି ଅର୍ଥ ପାଇଛି ଏଲିସ୍। ସେତକ ମାରିନେବା ପାଇଁ ଏଲିସ୍‌ର ଅନ୍ତରଙ୍ଗ ବନ୍ଧୁ ସହିତ ତାକୁ ମିଶିବାକୁ ଦେଉନାହାନ୍ତି ଏମାନେ। ଯେଉଁ ଯୁବକଙ୍କୁ ଫାଟକ ପାଖରେ ଠିଆ ହୋଇଥିବାର ଦେଖିଥିଲେ, ସେ ଏଲିସ୍‌ର ବନ୍ଧୁ। ଏଲିସ୍‌ର ପୋଷାକ ପିନ୍ଧିବା ଯୋଗୁଁ ପଛପଟୁ ଆପଣ ଏଲିସ୍ ଭଳି ଦେଖାଯାଉ-ଥିଲେ। ବନ୍ଧୁ ସହିତ ନ ମିଶି ମଧ୍ୟ ଏଲିସ୍ ଯେ ଏମାନଙ୍କ ସହିତ ଶାନ୍ତ ଭାବରେ ରହିଛି, ଏହା ଦେଖାଇବା ପାଇଁ ଏତେ ସବୁ କାଣ୍ଡ କାରଖାନା।

ଯେପରିକି ଫାଟକ ପାଖରେ ଥିବା ତାର ବନ୍ଧୁ ଭାବିବ, ଏଲିସ ତାକୁ ଭୁଲିଯାଇଛି।"

ପରଦିନ ଯଥାସମୟରେ ମି. ହୋମସ୍ ଓ ଡ. ୱାଟସନ୍ 'କପରବିଚ୍' କୋଠାରେ ପହଞ୍ଚିଲେ। ରୁକ୍ୟାସଲ ଦମ୍ପତ୍ତି ନ ଥା'ନ୍ତି। ମି. ଟୋଲାର୍ ମଦ ପିଇ ଅଜ୍ଞାନ। ମିସେସ୍ ଟୋଲାର୍ ଷ୍ଟୋର ଘରେ ବନ୍ଦ ହୋଇ କବାଟ ବାଡ଼ଉଥାଏ। ମି. ହୋମସ୍ କହିଲେ, "ମିସେସ୍ ଟୋଲାରଙ୍କୁ ସବୁକଥା ଜଣା। ତା' ପାଖକୁ ଯିବା ଚାଲ।" ସମସ୍ତେ ଶୀଘ୍ର ଶୀଘ୍ର ତଳକୁ ଓହ୍ଲାଇଲେ। କିନ୍ତୁ ତଳେ ମି. ରୁକ୍ୟାସଲଙ୍କ ସହିତ ସାକ୍ଷାତ। ଲୋକଟା ମି. ହଣ୍ଟରଙ୍କୁ ପୂରାପୂରି ବିଶ୍ୱାସ କରି ପାରିନାହିଁ-- ଏଣୁ ଶୀଘ୍ର ଫେରିଆସିଛି। ଏମାନଙ୍କୁ ଦେଖି ସେ ସ୍ତବ୍ଧ।

ହୋମସ୍ ଗର୍ଜନ କଲେ-- "ତୋ ଝିଅ କେଉଁଠି ପାଷାଣ୍ଡ !"

ରୁକ୍ୟାସଲର ବି ଓଲଟା ଗର୍ଜନ-- "ସେ କଥା ପଚାରିବାକୁ ତୁ କିଏ ? ପର ଘରେ ପଶି ଅନଧିକାର ଚର୍ଚ୍ଚା ! ମଜା ଚଖାଉଛି ରୁହ। କେହି ଜୀବନ ନେଇ ଫେରିବନି।" ସେ ତଳକୁ ଦଉଡ଼ିଲା ଡାହାଳ କୁକୁରକୁ ଆଣିବା ପାଇଁ।



ତଳୁ ହିଂସ୍ର କୁକୁରର ରକ୍ତ ପାଣିକରା ଗର୍ଜନ ଶୁଭିଲା। ଡ. ୱାଟସନ୍ ପକେଟ୍‌ରୁ ରିଭଲଭର୍ କାଢ଼ିଲେ। କିନ୍ତୁ ପରେ ପରେ ରୁକ୍ୟାସଲର ଛାତିଥରା ଯନ୍ତ୍ରଣାଭରା ଆର୍ତ୍ତନାଦ ଭାସିଆସିଲା। ମିସ୍ ହଣ୍ଟର୍ ପାଟି କଲେ, "ମାଲିକଙ୍କୁ ବୋଧହୁଏ ଖାଇସାରିଲାଣି ଡାହାଳ--" ସମସ୍ତେ ତଳକୁ ଦୌଡ଼ିଲେ। ରୁକ୍ୟାସଲଙ୍କୁ ତଳେ ପକାଇ ତାଙ୍କ ତୋଟିକୁ କାମୁଡ଼ି ଧରିଛି ହିଂସ୍ର କୁକୁର। ପାଷାଣ୍ଡଟା ! ହିଂସ୍ରଭାବ ବଢ଼ାଇବା ପାଇଁ ତାକୁ ଭଲ ଭାବରେ ଖାଇବାକୁ ଦିଏନାହିଁ। ଆଜି କୁକୁର କବଳରେ ପଡ଼ିଛି। ୱାଟସନ୍ ଗୁଳି କଲେ। କୁକୁରଟା ଶେଷ ହୋଇଗଲା। ଫଳରେ ବଞ୍ଚିଗଲା ରୁକ୍ୟାସଲ। ପାଟି ଶୁଣି ମଦୁଆ ଟୋଲାରର ଚେତା ଫେରିଲା।

ୱାଟସନ୍ ଡାକ୍ତର। ସେ ରୁକ୍ୟାସଲର ପ୍ରାଥମିକ ଚିକିତ୍ସା କଲେ। ହୋମସ୍‌ଙ୍କ ନିର୍ଦ୍ଦେଶରେ ଷ୍ଟୋର ଘରୁ ମିସେସ୍ ଟୋଲାରଙ୍କୁ ମୁକ୍ତ କରାଗଲା। ସବୁ କଥା ଦେଖି ସେ କହିଲା, "ମୋତେ ପ୍ରଥମରୁ କହିଥିଲେ ଏତେ କିଛି ଘଟି ନ ଥାନ୍ତା। ମୁଁ ଏଲିସକୁ ଆଜି ସକାଳେ ତା' ବନ୍ଧୁ ମି. ଫାଉଲରଙ୍କ ସହିତ ପଠାଇ ଦେଇଛି-- ସେମାନେ ବହୁଦୂରକୁ ଯାଇ ଏବେ ବିବାହ କରିସାରିବେଣି। ମୋତେ ପ୍ରଚୁର ବକ୍‌ସିସ୍ ଦେଇଛନ୍ତି। ମାଲିକ ବିଚରା ନିଜ ଜାଲରେ ନିଜେ ପଡ଼ିଲେ। ହାୟ୍-ହାୟ୍ !"

ମି. ରୁକ୍ୟାସଲ ଉପଯୁକ୍ତ ଚିକିତ୍ସା ଯୋଗୁ ବଞ୍ଚିଗଲେ; କିନ୍ତୁ ସାରା ଜୀବନ ବିତାଇଲେ ଚିର ରୁଗ୍‌ଣ ହୋଇ।

(କୋନାନ୍ ଡଏଲଙ୍କ 'କପରବିଚ୍' ଗଳ୍ପର ସଂକ୍ଷିପ୍ତ ରୂପାନ୍ତର)

*ବୈରାମ ନଗର ଛକ, ବାଲେଶ୍ୱର-୩*



# କହିବି ଗପ

ଜୟନ୍ତିକା

କହିବି ଗପ ଶୁଣିବ କିଏ
ଆସିବ ଯଦି ଆସ
ଖୁସି ମନରେ ସାଥିରେ ମୋର
ପାଖକୁ ଲାଗି ବସ ।
ଚାରିଆଡ଼ ତ ଫରଚା ହେଲା
ଅଂଧାର ଗଲା ଲୁଚି
ସାଥିରେ ତା'ର ହାଉଳା ଡର
ଗଲାଣି କାହିଁ ଘୁଂଚି ।
ସାଗର ନୀଳ ସେପାରେ ଡେଇଁ
ଅଛି ଦୁନିଆ କାହିଁ
ମନରେ ତୁମ ସରାଗ ଅବା
ଆବେଶ କିଛି ନାହିଁ ।
ଜାଣିଛ ଯାହା ଦେଖୁଛ ସବୁ
ଆଖି ଆଗରେ ଥୁଆ
ତଥାପି କିଛି ରହିଛି ଛପି
ଅଦେଖା ଆଉ ନୂଆ ।
ଏକଶିଂଘିଆ ଘୋଟକ ଆଉ
ଆହ୍ଲାଦିନ୍‌ର ଖଣି
ଅବୋଲକରା ଏଣପଙ୍କର
ଅଛି କାହାଣୀ ମୁଣି ।
ପଥର ହୋଇ ରହିଛି ଠିଆ
ଦୟାଳୁ ରାଜାପୁଅ
ସଂସାର ଦୁଃଖ ଦେଖିଲେ ଯା'ର
ଆଖିରୁ ଝରେ ଲୁହ ।
ଶୁଣିବ ଯଦି କହିବି କଥା
ଅଦେଖା ଆଉ ନୂଆ
ଆଖି ପଛରେ ରହିଛି ଏକ
ସପନ ପେଡ଼ି ଥୁଆ ।

କେକେବିକେ କଲେଜ, କଟକ

**

---



ଶିକ୍ଷକ- ପିଲାଏ, ବିପରୀତ ଶବ୍ଦ କ'ଣ ତମେ ଜାଣିଛ ?
ପିଲାଏ- ହଁ, ସାର୍।
ଶିକ୍ଷକ- ଆଛା କହିଲ କଞ୍ଚାର ବିପରୀତ କ'ଣ ?
ପିଲାଏ- କଞ୍ଚାର ବିପରୀତ- ପାଚିଲା ।
ଶିକ୍ଷକ- ଆଚ୍ଛା କୁହ, କଞ୍ଚା ଆମ୍ବ।
ପିଲାଏ- ପାଚିଲା ଆମ୍ବ।
ଶିକ୍ଷକ- କଞ୍ଚା ବେଲ।
ପିଲାଏ- ପାଚିଲା ବେଲ।
ଶିକ୍ଷକ- ବାଃ, ତମେ ତ ଭଲ ଜାଣିଛ ! ଏଥର କୁହ-- କଞ୍ଚା ଅଣ୍ଡା।
ପିଲାଏ- ସାର୍, ପାଚିଲା ଅଣ୍ଡା ।

**--ଶ୍ରୀ ଗଜେନ୍ଦ୍ର ବେହେରା**







# ଶବ୍ଦଧନ୍ଦାର ଶହେ ବର୍ଷ

ଶ୍ରୀ ଫକୀର ଚରଣ ପାଢ଼ୀ

ସମଗ୍ର ବିଶ୍ୱରେ ପ୍ରକାଶ ପାଉଥିବା ବିଭିନ୍ନ ଭାଷାର ପ୍ରମୁଖ ସମ୍ବାଦପତ୍ର, ସାପ୍ତାହିକ, ମାସିକ ପତ୍ରପତ୍ରିକା, ଏପରିକି ସାହିତ୍ୟ ପତ୍ରିକାରେ ମଧ୍ୟ ନିୟମିତ ଭାବରେ 'ଶବ୍ଦଧନ୍ଦା' ପ୍ରକାଶ ପାଉଛି । ଏହି ଶବ୍ଦଧନ୍ଦାକୁ ଇଂରାଜୀରେ 'କ୍ରସଓ୍ୱାର୍ଡ ପଜଲ' ଓ ହିନ୍ଦୀରେ 'ବର୍ଗ ପହେଲି' କୁହାଯାଏ । କିନ୍ତୁ ପ୍ରାରମ୍ଭିକ କାଳରେ ଏହାକୁ 'ଶବ୍ଦବର୍ଗ' କୁହାଯାଉଥିଲା ।

ଶବ୍ଦଧନ୍ଦା ପାଇଁ ଉଦ୍ଦିଷ୍ଟ ଏକ ବଡ଼ ବର୍ଗକ୍ଷେତ୍ରକୁ ବହୁ ଛୋଟ ଛୋଟ ବର୍ଗକ୍ଷେତ୍ରରେ ପରିଣତ କରାଯାଇଥାଏ । ଏହି ଛୋଟ ବର୍ଗକ୍ଷେତ୍ରର କେତେକ ଘରେ ସଂଖ୍ୟା ମଧ୍ୟ ଲେଖାଯାଇଥାଏ । ଏହି ସଂଖ୍ୟାର ଏକ କ୍ରମ ରହିଥାଏ । ଆଉ କେତେକ ଘରେ ଚିତ୍ର ଦିଆ ଯାଇଥାଏ ବା କଳା ରଂଗ ଦିଆଯାଇଥାଏ । ପୁଣି କିଛି ଘର ଖାଲି ରହିଥାଏ । ଶବ୍ଦଧନ୍ଦାର ଅଙ୍କ ଲେଖାଯାଇଥିବା ଘରୁ ଆବଶ୍ୟକ ଅକ୍ଷର ବସେଇ ଖାଲି ଘର ଆଡ଼କୁ ଯିବାକୁ ହୁଏ । ଫଳରେ ଆବଶ୍ୟକ ଶବ୍ଦଟି ମିଳିଥାଏ । ଉକ୍ତ ଶବ୍ଦକୁ ବୁଝିବା ପାଇଁ କେତେକ ସୂତ୍ର ପ୍ରଦତ୍ତ ହୋଇଥାଏ । ଏହି ଶବ୍ଦଧନ୍ଦା ବର୍ଗକ୍ଷେତ୍ରକୁ କିଭଳି ପୂରଣ କରାଯିବ, ସେଥିପାଇଁ କିଛି ନିୟମ ରଖାଯାଇଥାଏ, ଯାହାର କି ସୂଚନା ଶବ୍ଦଧନ୍ଦା ତଳେ ପ୍ରଦାନ କରାଯାଇଥାଏ ।

ଶବ୍ଦଧନ୍ଦାର ବର୍ଗକ୍ଷେତ୍ରକୁ ବାମରୁ ଡାହାଣକୁ ଓ ଉପରୁ ତଳକୁ ପୂରଣ କରିବାକୁ ହୋଇଥାଏ । ଏହି କାର୍ଯ୍ୟ ପାଇଁ ବେଳେବେଳେ ଅଭିଧାନର ସାହାଯ୍ୟ ମଧ୍ୟ ନେବାକୁ ପଡ଼ିଥାଏ । ଫଳରେ ଶବ୍ଦଧନ୍ଦା ସମାଧାନ-କାରୀଙ୍କର ଶବ୍ଦଜ୍ଞାନ ବଢ଼ିବା ସହିତ ସାହିତ୍ୟ ଜ୍ଞାନ ମଧ୍ୟ ବୃଦ୍ଧି ପାଇଥାଏ । ଶବ୍ଦଧନ୍ଦା ବ୍ୟତୀତ ଚିତ୍ରଧନ୍ଦା ଓ ଗୋଟିଏ ଅକ୍ଷରରୁ ଶବ୍ଦଟିଏ ଗଠନ କରିବାର ଶବ୍ଦଧନ୍ଦା ମଧ୍ୟ ଆଜିକାଲି ପ୍ରକାଶ ପାଉଛି । ଏସବୁ ଗୂଢ଼ ପ୍ରଶ୍ନର ସମାଧାନ ପାଇଁ ପିଲାଙ୍କଠାରୁ ଆରମ୍ଭ କରି ବଡ଼ଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ମନରେ କୌତୂହଳ ଥାଏ । ସେଥିପାଇଁ କିଛି ଚିନ୍ତା ମଧ୍ୟ କରିବାକୁ ପଡ଼େ । ଫଳରେ ମସ୍ତିଷ୍କର ବ୍ୟାୟାମ ହୋଇଥାଏ । ସମସ୍ୟାର ସମାଧାନ ହୋଇଗଲେ, ଅର୍ଥାତ୍ ଶବ୍ଦଧନ୍ଦା ବର୍ଗକ୍ଷେତ୍ର ଠିକ୍‌ଠାକ୍ ପୂରଣ ହୋଇଗଲେ ମନରେ ଆନନ୍ଦ ଜାତ ହୋଇଥାଏ । ଶବ୍ଦଧନ୍ଦାର ନିର୍ଭୁଲ ସମାଧାନ ପାଇଁ ପୁରସ୍କାର ମଧ୍ୟ ପ୍ରଦାନ କରାଯାଇଥାଏ ।

ତେବେ ପ୍ରଶ୍ନ ଉଠୁଛି ଯେ ଯେଉଁ ଶବ୍ଦଧନ୍ଦା ମନରେ କୌତୂହଳ ସୃଷ୍ଟି କରିଥାଏ, ସମାଧାନରେ ମନରେ ଆନନ୍ଦ ଦେଇଥାଏ ଓ ଜ୍ଞାନ ବୃଦ୍ଧିରେ ସହାୟକ ହୋଇଥାଏ, ତାହା କିଏ ଓ କେବେ ବାହାର କରିଥିଲେ ?


ଆର୍ଥର ଓ୍ୱେନ୍

ଜଣାଯାଇଛି ଯେ ଆର୍ଥର ଓ୍ୱେନ୍ ଥିଲେ ଶବ୍ଦଧନ୍ଦାର ସ୍ରଷ୍ଟା । ସେ ଥିଲେ

'ଦି ନ୍ୟୁୟର୍କ ୱ୍ୱାର୍ଲ୍ଡ' ସାପ୍ତାହିକ ସମ୍ବାଦପତ୍ରର ସମ୍ପାଦକ । ୧୯୧୩ ମସିହାର କଥା । ଖ୍ରୀଷ୍ଟମାସ ପର୍ବ ପାଳନ ପୂର୍ବରୁ ସେ ଭାବିଲେ ଯେ ଏଥର ଖ୍ରୀଷ୍ଟମାସ ବିଶେଷାଙ୍କରେ ପାଠକମାନଙ୍କୁ କି ନୂଆ ଉପହାର ଦେବେ? ସେହି ଚିନ୍ତାରେ ସେ ବୁଡ଼ି ରହିଲେ । ଦିନେ ହଠାତ୍ ତାଙ୍କ ମୁଣ୍ଡକୁ ଗୋଟିଏ କଥା ଢୁକିଲା । ତାହା ହେଲା ପରସ୍ପର ସଂଶ୍ଲିଷ୍ଟ ଅକ୍ଷରଗୁଡ଼ିକୁ ଏପଟସେପଟ କରି ଶବ୍ଦର ଏକ ଗୋଲକଧନ୍ଦା ସୃଷ୍ଟି କରାଯାଇପାରେ । ଏଭଳି ଭାବରେ ସେ ଏକ ଶବ୍ଦଧନ୍ଦା ସୃଷ୍ଟି କରି ତାର ନାମ ରଖିଲେ 'ୱ୍ୱାର୍ଡ଼ କ୍ରସ୍ ପଜଲ' । ୧୯୧୩ ମସିହା, ଡିସେମ୍ବର ମାସ, ୨୧ ତାରିଖ, 'ଦି ନ୍ୟୁୟର୍କ ୱ୍ୱାର୍ଲଡ୍' ରବିବାସରୀୟ ସଂସ୍କରଣରେ ପ୍ରଥମ ଶବ୍ଦଧନ୍ଦା ପ୍ରକାଶ ପାଇଲା । ଏହା ଏତେ ଲୋକପ୍ରିୟ ହେଲା ଯେ ଥରେ ଉକ୍ତ ସମ୍ବାଦପତ୍ରର ଗୋଟିଏ ସଂସ୍କରଣ ସମ୍ପୂର୍ଣ୍ଣ ବିକ୍ରି ହୋଇଯାଇଥିଲା ।

ସେ ଶବ୍ଦଧନ୍ଦାର ଆକାରପ୍ରକାର ଉପରେ ମଧ୍ୟ ଅନୁସଂଧାନ ଚଳେଇଥିଲେ । ପ୍ରଥମ ଶବ୍ଦଧନ୍ଦାର ଆକୃତି ଥିଲା ହୀରାର ଆକୃତି ଭଳି । ଶବ୍ଦଧନ୍ଦାର ଲୋକପ୍ରିୟତା ବଢ଼ିବାରୁ ତାହା ଉକ୍ତ ସମ୍ବାଦପତ୍ରରେ ପ୍ରତି ସପ୍ତାହରେ ବାହାରିବାକୁ ଲାଗିଲା । କିଛି ସପ୍ତାହ ପରେ ଗୋଲକ ଧନ୍ଦାର ନାମ ୱ୍ୱାର୍ଡ଼-କ୍ରସ୍‌ରୁ କ୍ରସ୍-ୱ୍ୱାର୍ଡ଼କୁ ପରିବର୍ତ୍ତିତ ହୋଇଥିଲା । ଗୋଲକ ଧନ୍ଦାର ବହୁ ଆକାର ପ୍ରକାରକୁ ନେଇ ସେ ପରୀକ୍ଷା ନିରୀକ୍ଷା ଚଳେଇଥିଲେ । ସେଥିରେ ବୃତ୍ତାକାର ଗୋଲକ ଧନ୍ଦା ମଧ୍ୟ ସାମିଲ ଥିଲା । ଶେଷରେ ସେ ଆୟତାକାର ବିଶିଷ୍ଟ ଗୋଲକ ଧନ୍ଦାକୁ ପସନ୍ଦ କରିଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ତାହା ବର୍ଗାକାର କ୍ଷେତ୍ରକୁ ରୂପାନ୍ତରିତ ହୋଇଥିଲା । ପୁନଶ୍ଚ କ୍ରସ-ୱ୍ୱାର୍ଡ ମଝିରୁ ହାଇଫେନ୍‌କୁ ଉଠେଇ ତାହାକୁ କ୍ରସୱ୍ୱାର୍ଡ କରାଯାଇଥିଲା ।

ପ୍ରଥମ ଶବ୍ଦଧନ୍ଦାର ପ୍ରକାଶନ ପରେ ପରେ କିଛି ବୁଦ୍ଧିମାନ ପାଠକ ନିଜେ ନିଜେ ଶବ୍ଦଧନ୍ଦା ପ୍ରସ୍ତୁତ କରି 'ଦି ନ୍ୟୁୟର୍କ ୱ୍ୱାର୍ଲଡ୍'କୁ ପଠାଇବା ଆରମ୍ଭ କରିଥିଲେ । ୧୯୧୪ ମସିହା ଫେବୃୟାରୀ ମାସ ସୁଦ୍ଧା ସମ୍ପାଦକ ୱ୍ୱେନି ପାଠକମାନଙ୍କର ଶବ୍ଦଧନ୍ଦା ପ୍ରକାଶ କରିଥିଲେ । କିନ୍ତୁ ବହୁ ସମୟରେ ଶବ୍ଦଧନ୍ଦାରେ ମୁଦ୍ରଣ ପ୍ରମାଦ ରହିବାରୁ ସମସ୍ୟା ସମାଧାନରେ ଅସୁବିଧା ଦେଖା-ଯାଉଥିଲା । ଫଳରେ ଶବ୍ଦଧନ୍ଦା ବିଭାଗ ବନ୍ଦ କରିଦେବା ପାଇଁ ସମ୍ପାଦକ ନିଷ୍ପତ୍ତି ନେଲେ । କିନ୍ତୁ ପାଠକବର୍ଗ ଉକ୍ତ ନିଷ୍ପତ୍ତିର ବିରୋଧ କରିବାରୁ  ଗୋଟିଏ ସପ୍ତାହ ବନ୍ଦ ରହିବା ପରେ ଶବ୍ଦଧନ୍ଦାର ପୁନଃ ପ୍ରକାଶନ ଆରମ୍ଭ ହେଲା ।

କ୍ରସ୍‌ୱ୍ୱାର୍ଡ଼ ପଜଲ୍‌ର ବ୍ୟାପକ ଲୋକପ୍ରିୟତା ସତ୍ତ୍ୱେ ମଧ୍ୟ ସେତେବେଳେ 'ଦି ନ୍ୟୁୟର୍କ ୱ୍ୱାର୍ଲଡ୍' ସାପ୍ତାହିକ ସମ୍ବାଦପତ୍ର ବ୍ୟତୀତ ଅନ୍ୟ କୌଣସି ପତ୍ରପତ୍ରିକାରେ ତାହା ପ୍ରକାଶ ପାଉ ନ ଥିଲା । ଏହିଭଳି ଭାବରେ ୧୯୨୪ ମସିହା ପର୍ଯ୍ୟନ୍ତ ଉକ୍ତ ସମ୍ବାଦପତ୍ର ଶବ୍ଦଧନ୍ଦା ପ୍ରକାଶ କରି ଚାଲିଥିଲା । ଡିକ୍ ସାଇମନ୍ ଓ ଲିଙ୍କନ ସୁଷ୍ଟର କଲମ୍ବିଆର ସାମ୍ବାଦିକ ଅନୁଷ୍ଠାନରୁ ସଫଳତାର ସହ ଉତ୍ତୀର୍ଣ୍ଣ ହୋଇ ୧୯୨୪ ମସିହାରେ ଏକ ପ୍ରକାଶନ ସଂସ୍ଥା ପ୍ରତିଷ୍ଠା କଲେ । ପ୍ରକାଶନ ପାଇଁ ସେମାନେ କିଛି ପାଣ୍ଡୁଲିପି ଖୋଜିବାକୁ ଲାଗିଲେ । ଉପଯୁକ୍ତ ପାଣ୍ଡୁଲିପି ନ ମିଳିବାରୁ 'ଦି ନ୍ୟୁୟର୍କ ୱ୍ୱାର୍ଲଡ୍'ରୁ ପ୍ରକାଶିତ ଶବ୍ଦଧନ୍ଦାକୁ ସେମାନେ ଏକତ୍ର କରି ଏକ ପୁସ୍ତକ ପ୍ରକାଶ କଲେ । ସେହି ବହିଟି ତତ୍‌କ୍ଷଣାତ୍



ପାଠକୀୟ ଶ୍ରଦ୍ଧା ଲାଭ କରିବାରେ ସଫଳ ହେଲା ଓ ବହୁ ସଂଖ୍ୟାରେ ବିକ୍ରି ହେଲା ମଧ୍ୟ। ତା' ପରେ ଶବ୍ଦ ଧନ୍ଦାର ପ୍ରସାର ବିଶ୍ୱବ୍ୟାପୀ ହୋଇଯାଇଥିଲା।

ଉକ୍ତ ଘଟଣାକୁ ଟିକିଏ ଏପଟସେପଟ କରି ମଧ୍ୟ କୁହାଯାଇଥାଏ। ଡିକ୍ ସାଇମନ୍ ଓ ଲିଙ୍କନ ସୁଷ୍ଟର ୧୯୨୪ ମସିହା ବେଳକୁ ନୂଆ ନୂଆ ବିଷୟକୁ ନେଇ ଶବ୍ଦଧନ୍ଦା ସୃଷ୍ଟି କଲେ। ତା'ପରେ ସେହିସବୁ ଶବ୍ଦଧନ୍ଦାକୁ ଏକତ୍ର କରି ଏକ ବହି ଛାପିବା ପାଇଁ ବିଭିନ୍ନ ପ୍ରକାଶକଙ୍କ ନିକଟକୁ ଯାଇ ଅନୁରୋଧ କଲେ। କିନ୍ତୁ କୌଣସି ଜଣେହେଲେ ପ୍ରକାଶକ ତାହା ଗ୍ରହଣ କଲେନାହିଁ। ତା'ପରେ ସେମାନେ ଧୀରେ ଧୀରେ ପାଣ୍ଠି ସଂଗ୍ରହ କରି ବହିଟିକୁ ଛାପିଲେ। ପ୍ରଚାର ଅଭାବରୁ ପ୍ରଥମ ପର୍ଯ୍ୟାୟରେ ବହି ଖୁବ୍ କମ୍ ବିକ୍ରି ହୋଇଥିଲା। କିନ୍ତୁ ପରବର୍ତ୍ତୀ ପର୍ଯ୍ୟାୟରେ ଉକ୍ତ ପୁସ୍ତକର ବିକ୍ରି ପରିମାଣ ସାଢ଼େ ତିନି ଲକ୍ଷରେ ପହଞ୍ଚିଥିଲା। ଫଳରେ ଯୁକ୍ତରାଷ୍ଟ୍ର ଆମେରିକାରେ ଏକ ନାହିଁ ନଥିବା ଆଲୋଡ଼ନ ସୃଷ୍ଟି ହୋଇଥିଲା।

ଶବ୍ଦଧନ୍ଦାର ସମାଧାନ ପାଇଁ ଅଧିକାଂଶ ସମୟରେ ଅଭିଧାନର ପ୍ରୟୋଜନ ମଧ୍ୟ ହୋଇଥାଏ। ଫଳରେ ଅଭିଧାନର ବିକ୍ରି ମଧ୍ୟ ବଢ଼ିବାରେ ଲାଗିଲା। ଯୁକ୍ତରାଷ୍ଟ୍ର ଆମେରିକା ପରେ ବ୍ରିଟେନ୍‌ରେ ମଧ୍ୟ ଶବ୍ଦଧନ୍ଦା ବିଶେଷ ଲୋକପ୍ରିୟ ହୋଇଉଠିଲା। ବର୍ତ୍ତମାନ ଏହା ବିଶ୍ୱବ୍ୟାପୀ ହୋଇଗଲାଣି। ଶବ୍ଦଧନ୍ଦା ପ୍ରକାଶନ ଜ୍ଞାନ ବୃଦ୍ଧିର ତ ଏକ ମାର୍ଗ, ତତ୍‌ସହିତ ସମ୍ବାଦପତ୍ର ଓ ପତ୍ରପତ୍ରିକା ବିକ୍ରିର ଅନ୍ୟତମ ପ୍ରମୁଖ କାରଣ ବୋଲି କୁହାଯାଏ।

ଯୁଗୋସ୍ଲୋଭିଆର ZVONKD JANAN ବିଶ୍ୱର ବୃହତ୍ତମ ଶବ୍ଦଧନ୍ଦା ପ୍ରସ୍ତୁତ କରିଥିଲେ। ସେଥିପାଇଁ ତାଙ୍କୁ ବର୍ଷେ ସମୟ ଲାଗିଥିଲା। ଏଥିରେ ଥିଲା ୪୦ ହଜାର ବର୍ଗକ୍ଷେତ୍ର ଓ ୮୪୬୯ଟି ସମାଧାନ ସୂତ୍ର। ତଥାପି ଉକ୍ତ ଶବ୍ଦଧନ୍ଦାର ସମାଧାନର ସୂତ୍ର ବାହାରି ପାରି ନ ଥିଲା।

ବିଶ୍ୱର ଦୀର୍ଘତମ ଶବ୍ଦଧନ୍ଦା ପ୍ରସ୍ତୁତ କରିଥିଲେ YUGOSLAV DUSAN DOS। ଏହାର ସାମାଧାନ ପାଇଁ ଲାଗିଥିଲା ଦୀର୍ଘ ୫୦ ଘଣ୍ଟା ସମୟ। ବର୍ଗକ୍ଷେତ୍ର ପୂରଣ କରିବା ପାଇଁ ୧୫୩୪୯ ଶବ୍ଦ ବ୍ୟବହୃତ ହୋଇଥିଲା ଓ ଏଥିରେ ୪୫୦୦୦ ଅକ୍ଷର ରହିଥିଲା। ଏହାର ଆକାର ଥିଲା ୫୦ ମିଟର x ୦.୫ମିଟର।

ଫ୍ରାନସର GAY BROUTY ଓ JEAN LOUISE ଏକ ଶବ୍ଦଧନ୍ଦା ପ୍ରସ୍ତୁତ କରିଥିଲେ । ଏଥିପାଇଁ ଯେଉଁ କାଗଜ ବ୍ୟବହୃତ ହୋଇଥିଲା, ତାହାର ଉଚ୍ଚତା ଥିଲା ୫ ମିଟରରୁ ବେଶୀ ଓ ଓସାର ଥିଲା ୩ ମିଟର। ଏହାର ସମାଧାନ ପାଇଁ ୫୦ ହଜାର ବର୍ଗକ୍ଷେତ୍ରରେ ୧୮ ହଜାର ଶବ୍ଦ ଲେଖିବାକୁ ପଡ଼ିଥିଲା।

ତିନୋଟି ଆଫ୍ରିକୀୟ ସମ୍ବାଦପତ୍ରର ପୂର୍ଣ୍ଣ ପୃଷ୍ଠାରେ ୧୯୬୯ ମସିହାରେ ଏକ ଶବ୍ଦଧନ୍ଦା ପ୍ରକାଶ ପାଇଥିଲା। ଏଥିରେ ଥିଲା ୭୩୪୭ ବର୍ଗକ୍ଷେତ୍ର ଓ ୧୭୨୮ଟି ସମାଧାନ ସୂତ୍ର।

# ଗଜମୂର୍ଖ

ଶ୍ରୀ ଶଶୀକାନ୍ତ ବେହେରା

ବହୁଦିନ ତଳର କଥା । ଗହଳିଆ ଗଛଲତା ଘେରା ବଣରେ ଗୋଟିଏ ହାତୀ ଥାଏ; ହେଲେ ସେ ଭାରି ଦୁଷ୍ଟଟାଏ । ପ୍ରତିଦିନ ସେ ଯେତେକ ଡାଳପତ୍ର ଖାଏ, ଅଧିକ ଡାଳପତ୍ର ଭାଙ୍ଗି ନଷ୍ଟ କରେ । ଏପରିକି ତାର ପ୍ରିୟ ଖାଦ୍ୟ ବର ଫଳକୁ ମଧ୍ୟ ଛାଡୁ ନ ଥାଏ । ତାହା ଦେଖି ବଣ ପାଖରେ ରହୁଥିବା ଚାଷୀଟିଏ ବଡ଼ ଦୁଃଖ କରୁଥାଏ । ଗଛର ଡାଳଗୁଡ଼ିକ ନ ଭାଙ୍ଗିବାକୁ ହାତୀକୁ ଅନୁରୋଧ କରୁଥାଏ; ହେଲେ ଦୁଷ୍ଟ ହାତୀଟା କୌଣସି କଥା ଶୁଣୁ ନଥାଏ କି ମାନୁ ନ ଥାଏ ।

ଏମିତି ଦିନ ପରେ ଦିନ, ମାସ, ବର୍ଷ ବିତିଗଲା । ଚାଷୀଟି ଉପାୟ ନ ପାଇ ତା'ଘର ପାଖରେ ଥିବା ଗଛକୁ କଣ୍ଟାଝଣ୍ଟାରେ ବାଡ଼ ଘେରି ଅଟକରେ ରଖିଲା । ହାତୀଟି




ପ୍ରତିଦିନ ଛୋଟ ଛୋଟ ଗଛ, ପୁଣି ବଡ଼ ବଡ଼ ଗଛର ଡାଳପତ୍ର ଭାଙ୍ଗି ପକାଉଥାଏ । ହେଲେ ଚାଷୀର ଘେରା ହେଇଥିବା ଗଛର କ୍ଷତି କରି ପାରୁ ନ ଥିବାରୁ ସେ ଗଛଗୁଡ଼ିକ ଶାଗୁଆ ଓ ବଡ଼ ବଡ଼ ହେବାରେ ଲାଗିଥାଏ । ହାତୀ ଭାଙ୍ଗିଥିବା ଡାଳପତ୍ରଗୁଡ଼ିକ ଶୁଖିଯାଇ ନଷ୍ଟ ହେବାରେ ଲାଗିଥାଏ । ହାତୀଟି ମନ ଆନନ୍ଦରେ ତା'ଉପରେ ନାଚୁଥାଏ ।

କିଛିଦିନ ପରେ ବଣଟା ଥୁଣ୍ଟା ପାଲଟିଗଲା । ଗଛର ଗଣ୍ଡିଗୁଡ଼ିକ ଯାହା ଖାଲି ଠିଆ ହୋଇଥାଏ । ହାତୀଟି ଆଉ ଖାଇବ କ'ଣ ? ଭୋକ ଉପାସରେ ବଣର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଖାଲି ଧାଁ ଦଉଡ଼ କରୁଥାଏ । ଚାଷୀର ଘେରା ଭିତରେ ଥିବା ଗଛ ଉପରେ ତା'ର ନଜର ପଡ଼ିଲା । ଖାଇବା ପାଇଁ ମନ ବଳାଇଲା । ହେଲେ ତା'ଭିତରକୁ ଯାଇପାରୁଛି କେଉଁଠି ? କଣ୍ଟାବାଡ଼ର ଚାରିପାଖରେ ଘୂରିବୁଲିଲା, କାଳେ କେଉଁଠି ବାଟ ଥାଇପାରେ ! ସେ ସୁବିଧା କେଉଁଠାରେ ନ ପାଇ ନିରାଶ ହେଲା । ଚାଷୀଟି କ୍ଷେତ କାମ ସାରି ତା'ବସାକୁ ଫେରିବା ସମୟରେ ଦେଖିଲା ହାତୀଟି ତା'ର କଣ୍ଟାବାଡ଼ ଘେରା ପାଖରେ ଶୋଇଛି । ଚାଷୀକୁ ଦେଖି ହାତୀଟି ଉଠିପଡ଼ି ତା'ପାଖକୁ ଆସି କିଛି ଡାଳପତ୍ର ଖାଇବାକୁ ଦେବା ପାଇଁ ଅନୁରୋଧ କଲା, ହେଲେ ଚାଷୀ ସଫା ସଫା ମନା

---

ଫ୍ରାନସର ରେନେ କୋର୍ପେଣ୍ଟିଅର ଏକ ଶବ୍ଦଧନ୍ଦା ପ୍ରସ୍ତୁତ କରିଥିଲେ । ଏଥିରେ ରହିଥିଲା ୧୨୫୦୦୦ ଶବ୍ଦ । ଏହା ୨୭୦ ବର୍ଗ ମିଟର ସ୍ଥାନ ଅଧିକାର କରିଥିଲା ।

ପ୍ରଥମ ଶବ୍ଦଧନ୍ଦା ପ୍ରକାଶ ପାଇଥିଲା ୧୯୧୩ ମସିହା, ଡିସେମ୍ବର ମାସ, ୨୧ ତାରିଖରେ । ଏବେ ୨୦୧୩ ମସିହା ଡିସେମ୍ବର ମାସ ୨୧ ତାରିଖ ଅତିକ୍ରାନ୍ତ ହୋଇସାରିଛି । ଅର୍ଥାତ୍ ଶବ୍ଦଧନ୍ଦା ପ୍ରକାଶନର ଶହେ ବର୍ଷ ପୂରିଯାଇଛି । ବିଶ୍ୱରେ ଏବେ ତାର ଶତବାର୍ଷିକୀ ପାଳନ କରାଯାଉଛି ।

*ବକଡ଼ାବେଡ଼ା, ଡାବୁଗାଁ- ୭୬୪୦୭୨, ନବରଙ୍ଗପୁର* ✲✲

କରିଦେଲା ଓ କହିଲା,"ଯେତେବେଳେ ଅଯଥାରେ ତାଳପତ୍ର ଭାଙ୍ଗିବାକୁ ମନା କରୁଥିଲି, ସେତେବେଳେ ତ ମୋ କଥା ମାନିଲୁ ନାହିଁ; ଏବେ ମୁଁ କ'ଣ କରିବି ?"

ହାତୀଟି ନେହୁରା ହୋଇ କହିଲା- ଚାଷୀଭାଇ ! ଭୋକରେ ମୋ ପେଟ ଜଳୁଛି। ଏଇଲେ ତୁମେ ମୋତେ ଯାହା କାମ କରିବାକୁ କହିବ, କରିଦେବି; ହେଲେ ମୋତେ କିଛି ଖାଇବାକୁ ତାଳପତ୍ର ଦିଅ। ଦୁଷ୍ଟାମି କରିବାର ଫଳ ମୁଁ ପାଇସାରିଲିଣି।

ଚାଷୀ ହାତୀର କଷ୍ଟ ଦେଖି ବହୁ ଦୁଃଖ କଲା ଓ କହିଲା-- ଦେଖ୍ ମୁଁ ବହୁ କଷ୍ଟ କରି କଣ୍ଟାବାଡ଼ ଦେଇ କେତେଟା ଗଛକୁ ବଞ୍ଚେଇ ରଖିଛି। ସେ ଗଛର ତାଳପତ୍ର ଭାଙ୍ଗିବାକୁ ମୋର ହାତ ଯାଉନାହିଁ। ତୋ'ର ଭୋକ ଦେଖି ମୁଁ ବାଧ୍ୟ ହୋଇ କିଛି ତାଳପତ୍ର ଛିଣ୍ଡାଇ ଖାଇବାକୁ ଦେବି। କିନ୍ତୁ ତା'ପୂର୍ବରୁ ତୁ ଭାଙ୍ଗିଥିବା ଶୁଖିଲା ଗଣ୍ଡିଗୁଡ଼ିକୁ ବୋହିଆଣି ମୋ ଘର ସାମ୍ନାରେ ରଖ। ହାତୀକୁ ପ୍ରବଳ ଭୋକ ଲାଗୁଥାଏ। ସେ ଚାଷୀର କଥାରେ ରାଜି ହେଲା। ଧୀରେ ଧୀରେ ଥୁଣ୍ଟାବଣ ଆଡ଼କୁ ଆଗେଇଲା। ଦେଖିଲା ଯେଉଁ ଶୁଣ୍ଢରେ ସେ ଗଛ ତାଳଗୁଡ଼ିକ ଖୁସିରେ ଭାଙ୍ଗିଥିଲା, ସେ ତାଳଗୁଡ଼ିକ ଶୁଖିଯାଇଛି। ଥୁଣ୍ଟା ଗଣ୍ଡିଗୁଡ଼ିକରୁ ଲୁହ ଝରିପଡୁଛି। ତା'ଦେଖି ହାତୀ ବହୁତ ଅନୁତାପ କଲା। ଶୁଣ୍ଢରେ ତାଳଗୁଡ଼ିକ ପିଠିରେ ଲଦି ଚାଷୀର ଘରକୁ ଫେରିଲା। ଚାଷୀଟି ବରଗଛର କିଛି ତାଳପତ୍ର ଭାଙ୍ଗି ରଖିଥିଲା, ହାତୀକୁ ଦେଲା। ହାତୀଟି ସେତକ ଖାଇ ପେଟେ ପାଣି ପିଇ ବହଳ ନିଦରେ ଶୋଇଗଲା।

ପରଦିନ ଚାଷୀ ତା'କ୍ଷେତରୁ ଧାନ ବୋହି ଆଣିବାକୁ ହାତୀକୁ କହିଲା। ଚାଷୀ ହାତି ପିଠିରେ ଧାନତକ କ୍ଷେତରୁ ତା'ଘରକୁ ବୋହି ଆଣିଲା। କିଛି ନଡ଼ା ଓ ଧାନ ମଧ୍ୟ ହାତୀକୁ ଖାଇବାକୁ ଦେଲା। ଏଇମିତି ନିତି ପ୍ରତିଦିନ ହାତୀ ଚାଷୀକୁ ନିଜ କାମରେ ଲଗାଇଲା। କେଢ଼େ ଖୁସିରେ ବୁଲୁଥିବା ହାତୀଟି ଏବେ ଚାଷୀର ବୋଲ ମାନି କାମ କଲା। ଦୁଷ୍ଟାମି କରିବାର ଫଳ ସେ ନିଜେ ଅନୁଭବ କଲା। ଆବଶ୍ୟକତା ଠାରୁ ଅଧିକ ନଷ୍ଟ କଲେ ଏପରି କଷ୍ଟ ସହିବାକୁ ହୁଏ ବୋଲି ଜାଣିଲା।



ସେହିଦିନଠାରୁ ହାତୀ ମଣିଷର ବୋଲ ମାନି କାମ କଲା। ଦୁଷ୍ଟାମି ତା'ର ରହିଲା ନାହିଁ। କେବେକେବେ ଦୁଷ୍ଟାମି କଲେ ହାତୀଆଳ ତା'ମୁଣ୍ଡରେ ଲୁହା ଶାବଳ କେଞ୍ଚେ। ସର୍କସରେ ଖେଳ ଦେଖାଏ। ନନ୍ଦନକାନନ ଓ ଶିମିଳିପାଳ ଗଲେ ହାତୀମାନଙ୍କୁ ଦେଖିବାକୁ ମିଳେ। ଏବେ ଜାଣିଲ ତ, ହାତୀ ପରି ଦୁଷ୍ଟାମି କଲେ ଫଳ କ'ଣ ହେବ ? ସେଇଥିପାଇଁ ପରା ହାତୀକୁ 'ଗଜମୂର୍ଖ' କୁହାଯାଏ !

*ପରମାନନ୍ଦପୁର, ବାହାବଳପୁର, ତିହିଡ଼ି, ଭଦ୍ରକ*



ପୃଥିବୀର ଓଜନ ପ୍ରତ୍ୟେକ ଦିନ ୧୦୦ଟନ୍ ବଢ଼ି ଯାଉଛି। ବାହାର ମହାକାଶର ଧୂଳି ଏହି ଓଜନ ବୃଦ୍ଧିର କାରଣ।




# ସୁଖରେ କାଟିବା କାଳ

ଶ୍ରୀ ମାଧବାନନ୍ଦ ପଣ୍ଡା

"ହଇରେ ବଗୁଲା ଏତେଥର କିଆଁ ଧୋଉଅଛୁ ହାତ ତୋର ?
କେତେ ପାଣି ନଷ୍ଟ ହେଉଛି ଜାଣିଚୁ? ଦେହ ସହୁନାହିଁ ମୋର!"
"କୁସୁମ ଅପାଲୋ ଜାଣିନାହୁଁ କିବା କାରଣ ରହିଛି ପରା
ବିଶ୍ୱ ହାତଧୁଆ- ଦିବସ ପାଳିତ ହେଉଛି ପୃଥିବୀ ସାରା ।
କେତେ କେତେ କାମ କରୁଛେ ହାତରେ ଧରୁଛେ ଦରବ ଯେତେ
ନ ପାରୁଛେ ଦେଖି ଲାଗି ରହିଥାନ୍ତି ଅଦୃଶ୍ୟ ଜୀବାଣୁ କେତେ ।
ହାତରେ ଖାଇବା ଦରବକୁ ଧରି ପାଟିରେ ଦେଲେ ପୂରାଇ
ସେ ଜୀବାଣୁମାନ ପେଟ ଭିତରକୁ ସହଜେ ଯିବେ ପଳାଇ ।
ସେମାନଙ୍କ ଯୋଗୁ କେତେକେତେ ରୋଗ ହୁଅଇ ଶରୀରେ ଜାତ
ସେ ରୋଗରୁ ରକ୍ଷା ପାଇବା ସହଜେ ଖାଇଲେ ଧୋଇକି ହାତ ।
ଜାତିସଂଘ ଏଣୁ କରିଛି ଘୋଷଣା ଅକ୍ଟୋବର ପନ୍ଦରରେ
ବିଶ୍ୱ ହାତଧୁଆ ଦିବସ ପାଳିତ ହୋଇବ ସବୁ ଦେଶରେ ।
ହେଲେ ସଚେତନ ରୋଗବାଗମାନ ପାଶେ ନ ପାରିବେ ପଶି
ସରବେ ନିରୋଗ ଜୀବନଧାରଣ କରିବେ ତ ହସି ହସି ।"
"ଏତେ କଥା ଅଛି ବୋଲି ବଗୁଲାରେ ଜାଣି ତ ନ ଥିଲି ମୁହିଁ
ଖାଇବା ଆଗରୁ ହାତ ଧୋଇବି ମୁଁ ନ ହେଲେ ଖାଇବି ନାହିଁ ।
ସାଙ୍ଗମାନଙ୍କୁ ମୁଁ ଦେବିରେ ଜଣାଇ ହାତ ଧୋଇବାର ଫଳ
ଶରୀର ନିରୋଗ ହେଲେ ସିନା ଆମେ ସୁଖରେ କାଟିବା କାଳ ।"

ନୟନ ବିହାର-୩୩, କସୋଟୀ, ପାଣ୍ଡିରୀ, କେନ୍ଦ୍ରାପଡ଼ା- ୭୫୪୨୫୦

**

- କାନାଡ଼ାର ଟରୋଣ୍ଟୋ (Toronto) ସହରର ଆକ୍ଷରିକ ଅର୍ଥ ହେଉଛି 'ସାକ୍ଷାତ ସ୍ଥଳ' (Meeting Place)।
- ଚାନ୍ଦେଲା ବଂଶର ରାଜାମାନେ ପ୍ରସିଦ୍ଧ କାରୁକାର୍ଯ୍ୟ ବିମଣ୍ଡିତ ଖଜୁରାହୋ ମନ୍ଦିରଗୁଡ଼ିକ ନିର୍ମାଣ କରିଥିଲେ।
- ପଦ୍ମଫୁଲ ଚିହ୍ନ ସଂସ୍କୃତି ଏବଂ ସଭ୍ୟତା(Culture and Civilisation)କୁ ସୂଚିତ କରେ।



# ଚିକୁନ୍ ଏବଂ ମଙ୍ଗଳ ଗ୍ରହର ମଣିଷ

ଶ୍ରୀ ଗୋବିନ୍ଦ ଚନ୍ଦ୍ର ନାୟକ

ବଣସିଂହ ନାମରେ ଗାଁ'ଟିଏ ଅଛି । ସୁନ୍ଦର ଗାଁଟିଏ । ପାଖରେ ବଣଜଙ୍ଗଲ । ଛୋଟ ଝରଣାଟିଏ କୁଳୁକୁଳୁ ହୋଇ ବହିଚାଲିଛି । ଗାଆଁର ଉତ୍ତର ଦିଗରେ ବହୁତ ଚାଷଜମି ଅଛି । ଦକ୍ଷିଣ ଦିଗରେ ଗୋଟିଏ ଲଣ୍ଡାପାହାଡ଼ । ପଶ୍ଚିମ ଓ ପୂର୍ବରେ ଲମ୍ବା କାଜୁ ବଗିଚା ।

ଏହି ଗାଁ'ର ମଧ୍ୟ-ଇଂରାଜୀ ବିଦ୍ୟାଳୟରେ ଚିକୁନ୍ ପାଠ ପଢ଼େ । ଚିକୁନ୍ ଭଲପିଲା । ଶାନ୍ତ, ସରଳ ପିଲା । ମିଠା ମିଠା କଥା କହେ । ଗୁରୁଜନଙ୍କୁ ଭକ୍ତି କରେ । ତା'ର ଗୋଟିଏ ଦୁର୍ବଳତା । ସେ ଡରିଗଲେ କିଛି ଉତ୍ତର ଦେଇପାରେନି । ସବୁ କଥା ଭୁଲିଯାଏ । ସେଥିପାଇଁ ଯେତେ ପାଠ ପଢ଼ିଲେ ମଧ୍ୟ ଥରେ ଥରେ ପରୀକ୍ଷାରେ ଫେଲ୍ ହୋଇଯାଏ । ଏଥିପାଇଁ ଚିକୁନ୍‌ର ମା' ବହୁତ ବ୍ୟସ୍ତ ହୁଅନ୍ତି । ଚିକୁନ୍ ପରୀକ୍ଷାରେ କିପରି ଭଲ କରିବ, ସେ କଥା ଚିନ୍ତା କରନ୍ତି । ଚିକୁନ୍‌କୁ ବହୁତ ବୁଝାନ୍ତି । କୌଣସି ସମୟରେ ନ ଡରିବା ପାଇଁ କୁହନ୍ତି ।

ଏହିପରି କିଛିଦିନ ଗଲା । ବାର୍ଷିକ ପରୀକ୍ଷା ଆସିଲା । ଚିକୁନ୍ ସେତେବେଳେ ସପ୍ତମ ଶ୍ରେଣୀର ଛାତ୍ର । ସେତେବେଳେ ସପ୍ତମ ଶ୍ରେଣୀ ବୋର୍ଡ ପରୀକ୍ଷା ହେଉଥାଏ । ଗାଆଁ ପାଖରେ ପରୀକ୍ଷା କେନ୍ଦ୍ର । ଚିକୁନ୍ ଠିକ୍ ସମୟରେ ପରୀକ୍ଷା ଦେଲା । ଏହି ପରୀକ୍ଷା କେନ୍ଦ୍ରର ନିରୀକ୍ଷକ ଭାରି ରାଗୀ ଲୋକ । ତାଙ୍କର କର୍କଶ କଣ୍ଠସ୍ୱର, ମୋଟା ନିଶ । ଏସବୁ ଦେଖି ଚିକୁନ୍ ଡରିଗଲା ଆଉ ଠିକ୍‌ରେ କିଛି ଉତ୍ତର ଲେଖିପାରିଲା ନାହିଁ । ଫଳରେ ସେ ବର୍ଷ ମଧ୍ୟ ଫେଲ୍ ହେଲା । ବୋର୍ଡ ପରୀକ୍ଷାରେ ଫେଲ୍ ହେବାରୁ ବାପା ରାଗିଗଲେ । କହିଲେ, "ତୁମ ପାଇଁ ଏତେ ପଇସା ଖର୍ଚ୍ଚ କରୁଛି, ସବୁ ଜିନିଷ ଠିକ୍ ସମୟରେ କିଣି ଦେଉଛି, ତଥାପି ତୁମେ ପାଶ୍ କରିପାରୁନ !" ଚିକୁନ୍ କିପରି ବାପାଙ୍କୁ ବୁଝାଇବ ? ବାପାଙ୍କୁ ସେ ବହୁତ ଡରେ । ବାପାଙ୍କର ରାଗ ଦେଖି ସେ କାନ୍ଦି ପକାଇଲା । ଚିକୁନ୍ ଭାବିଲା, ସେ ଘର ଛାଡ଼ି ଚାଲିଯିବ । ସତକୁ ସତ ସେହିଦିନ ରାତିରେ ସେ ଘର ଛାଡ଼ି ଚାଲିଗଲା । ସହଜେ ତ ସେ ଡରକୁଳା । ତଥାପି ନିର୍ଭୟରେ ସେ ଆଗେଇଗଲା । ଗାଁ'ମୁଣ୍ଡ ଆସି ପହଞ୍ଚିଲା । ତା'ପରେ ଆରମ୍ଭ ହେଲା କାଜୁବଗିଚା । ଏହି ବଗିଚାକୁ ଚିକୁନ୍ ଡରେ । ଟିକିଏ ଠିଆ ହେଲା ସେ । ପୁଣି ଧୈର୍ଯ୍ୟ ଧରିଲା । ଛାତିରେ ଛେପ ଟିକିଏ ପକାଇଲା । ସେ ଡରିଲା ସମୟରେ ମା' ଏମିତି ଛେପ ପକାଇ ଦିଅନ୍ତି । ତା'ପରେ ଆଗେଇଗଲା ସେ । କାଜୁ ବଗିଚା ମଝିରେ ପହଞ୍ଚିଲା । ଗୋଟିଏ ଝଙ୍କାଳିଆ କାଜୁ ଗଛରେ ଚଢ଼ିଗଲା । ଗୋଟିଏ ମଜଭୁତ୍, ନୁଆଁଣିଆ ଡାଳ ଉପରେ ଦୁଇଗୋଡ଼ ଲମ୍ବାଇ ବସି ପଡ଼ିଲା ଆଉ ଦୁଇଟି ଡାଳକୁ ଦୁଇ ହାତରେ ଧରିନେଲା ।

ଅଧଘଣ୍ଟା ପରେ ଚିକୁନ୍ ଦେଖିଲା ଆକାଶଟା ଆଲୋକରେ ପୂରିଯାଇଛି । ଚାରିଆଡ଼େ ନୀଳ ରଙ୍ଗର ଚିକ୍‌ମିକ୍ ଆଲୋକ । ଗୋଟିଏ ବିଚିତ୍ର ଯାନ । ଛତାଭଳିଆ ଦେଖାଯାଉଛି । ଯାନ ଉପରେ ଗୋଟିଏ ବଡ଼ ଚକ୍ର ଘୂରୁଛି । ଯାନଟି କାକୁ ବଗିଚା ମଝିରେ ରହିଲା । ଆସ୍ତେ ଆସ୍ତେ ଆଲୋକ କମିଗଲା । ଯାନ ଭିତରେ ଆଲୋକ ଜଳୁଥାଏ । ଚିକୁନ୍ ନିର୍ଭୟରେ ସିଆଡ଼େ ଚାହିଁଥାଏ । ଯାନ ଭିତରୁ ବିଚିତ୍ର ଚେହେରାର ମଣିଷ କେତେଜଣ ବାହାରିଲେ । ହାତରେ ଗୋଟିଏ ଲେଖାଏଁ ଆଲୋକ ଧରିଥାନ୍ତି । ଟର୍ଚ୍ଚ ଲାଇଟ୍‌ଠାରୁ ଉଜ୍ଜ୍ୱଳ ଆଲୋକ ବାହାରୁଥାଏ ସେଥିରୁ । ସମସ୍ତେ ଚାରିପଟକୁ ଆଗେଇ-ଗଲେ । ତାଙ୍କ ଭିତରୁ ଜଣେ ଚିକୁନ୍ ଆଡ଼କୁ ଆସୁଥାଏ । ତାକୁ ଦେଖି ଚିକୁନ୍ ତଳକୁ ଓହ୍ଲାଇ ପଡ଼ିଲା । ସେ ବିଚିତ୍ର ଲୋକଟି ଆସି ଚିକୁନ୍ ଆଗରେ ଠିଆହେଲା । ଚିକୁନ୍ ଭୟରେ ଥରୁଥାଏ । ଲୋକଟି ତା'ର ଭାଷାରେ କ'ଣ ପଚାରିଲା । ଚିକୁନ୍ କିଛି ବୁଝିପାରିଲା ନାହିଁ । ଚିକୁନ୍‌ର ଇଂରାଜୀ ନ ହେଲେ ବି ସେ ଜାଣିଛି ଏହା ଇଂରାଜୀ ଭାଷା ନୁହେଁ । ସେ ଟିଭି କାର୍ଯ୍ୟକ୍ରମ ଦେଖେ । ଏହା ହିନ୍ଦୀ କିମ୍ବା ଓଡ଼ିଆ ଭାଷା ମଧ୍ୟ ନୁହେଁ । ଏଣୁ ଚିକୁନ୍ ଟିକିଏ ଭାବି ହାତ ହଲାଇ ନାହିଁ କଲା ।

ବିଚିତ୍ର ଜୀବଟି କ'ଣ ଭାବିଲା କେଜାଣି, ଗୋଟିଏ ଛୋଟ ଯନ୍ତ୍ର ବାହାର କଲା । ତାହା ଠିକ୍ ଦେଖିବାକୁ କମ୍ପ୍ୟୁଟର ଭଳି । ତାକୁ ତଳେ ରଖି ଗୋଟିଏ ତାର ସେଥିରେ ଯୋଡ଼ିଦେଲା । ଆଉ ମୁଣ୍ଡକୁ ଆଣି ଗୋଟିଏ ଅଠା ଭଳି କ୍ରିମ୍ ଲଗାଇଲା । ତାକୁ ଚିକୁନ୍‌ର ଛାତି ଉପରେ ଛୁଇଁଦେଲା । ସାଙ୍ଗେ ସାଙ୍ଗେ ଚିକୁନ୍ ଛାତିରେ ଲାଗିଗଲା । ଚିକୁନ୍ ଭୟରେ ଥରୁଥାଏ । କିଛି ସମୟ ପରେ ଯନ୍ତ୍ରରୁ ଟିଂ ଟିଂ ହୋଇ ନାଲି, ତା'ପରେ ନେଳି ଓ ଧଳା ଆଲୁଅ ବାହାରିଲା । ପରେ ପରେ ସେଥିରୁ ଓଡ଼ିଆ ଭାଷାର କଥା ବାହାରିଲା । ଚିକୁନ୍ ଜାଣିଗଲା ଏହା ଏପରି ଗୋଟିଏ ମେସିନ୍, ଯାହା ଛାତିର ସ୍ପନ୍ଦନରୁ ସେ କେଉଁ ଭାଷା କହୁଛି ବା କହିବ, ସେହି ଭାଷାଦ୍ୱାରା ସେ ମଣିଷକୁ ପ୍ରଶ୍ନ କରିବ । ସେ ଯନ୍ତ୍ରରୁ ପ୍ରଶ୍ନ ଆସିଲା, "ତୁମ ନାମ କ'ଣ ?" ଚିକୁନ୍ ଉତ୍ତରଦେଲା, 'ଚିକୁନ୍' । ତା'ପରେ ପ୍ରଶ୍ନ- କ'ଣ କର ? କେଉଁ ଶ୍ରେଣୀରେ ପଢ଼ ? ଏଠାରେ କ'ଣ କରୁଛ ? ଏହିପରି ଅନେକ ପ୍ରଶ୍ନ ପଚାରିଲା । ଚିକୁନ୍ ସବୁ କହିଲା । ସେ କିପରି ଘର ଛାଡ଼ି ଚାଲିଆସିଛି, ସେ କଥା ମଧ୍ୟ କହିଲା ।

ଚିକୁନ୍‌ର ଉତ୍ତର ଶୁଣି ଯନ୍ତ୍ରଟି କହିଲା, "ଆମ୍ଭେମାନେ ମଙ୍ଗଳ ଗ୍ରହରୁ ଆସିଛୁ । ତୁମ ପୃଥିବୀରେ କ'ଣ ସବୁ ଅଛି ଜାଣିବା ପାଇଁ । ତୁମକୁ ଦେଖି ଜାଣିଲୁ, ତୁମେ ସବୁ ଡରକୁଳା । ଆମ ମଙ୍ଗଳ ଗ୍ରହରେ କୌଣସି ପିଲା ଡରନ୍ତି ନାହିଁ । ଭଲ ପାଠ ପଢ଼ନ୍ତି । କଥା ମାନନ୍ତି । ଭଲ ପାଠ ପଢ଼ି ପାଶ୍ ମଧ୍ୟ କରନ୍ତି । ତୁମେ ଏଠାରେ ରାତିରେ ଏକା ବସିଛ, ଡର ଲାଗୁନାହିଁ ? ଆମ୍ଭକୁ ଦେଖି ଡରୁଛ ? ଏମିତି ହେଲେ ତୁମେ ବଡ଼ ମଣିଷ ହେବ କିପରି ? ଭବିଷ୍ୟତରେ ତୁମେ ସୈନିକ ହେଲେ ଦେଶରକ୍ଷା କରିବ କିପରି ? ଏଣୁ ତୁମେ ଧୈର୍ଯ୍ୟ ରଖ । ମନକୁ ଦୃଢ଼ କର । ଦେଖିବ ସବୁ ଠିକ୍ ହୋଇଯିବ ।" ଏହାପରେ ସେ ବିଚିତ୍ର ଲୋକଟି ଚିକୁନ୍ ଛାତିରୁ ତାରକୁ କାଢ଼ିନେଲା । ସେ ଲୋକଟି ତଳୁ କମ୍ପ୍ୟୁଟରକୁ ହାତରେ ଧରି ଉଠାଇଲା । ଗଲାବେଳେ ତାଙ୍କ ଗ୍ରହର ଗୋଟିଏ ମୋଟା କଲମ ଦେଲା । ଚିକୁନ୍ ତାକୁ ଧରି ଖୁସି ହେଲା । ଚିକୁନ୍ ଚାହିଁଛି ସେ ଯାଇ ଯାନରେ ବସିଲା । କିଛି ସମୟ ପରେ ଯାନଟି ପୁଣି ଉପରକୁ ଉଡ଼ିଗଲା ।

# ବୁଦ୍ଧି ପରୀକ୍ଷା

ତଳେ ଦିଆଯାଇଥିବା ପ୍ରଶ୍ନଗୁଡ଼ିକୁ ପ୍ରଥମେ ନିଜେ ନିଜେ ସମାଧାନ କରିବାକୁ ଚେଷ୍ଟା କର । ପରେ ଉତ୍ତର ସଙ୍ଗେ ମିଳାଇ ଦେଖ ।

୧ । ଶ୍ୟାମ ଓ ଶରତ 'କ' ନାମକ ସ୍ଥାନରୁ ବାହାରିଲେ । ଶ୍ୟାମ ବାଁକୁ ସିଧା ୪ କି.ମି. ଯାଇ ସେଠାରୁ ଡାହାଣକୁ ୫ କି.ମି. ଗଲା । ଶରତ ପଶ୍ଚିମକୁ ସିଧା ୩ କି.ମି. ଯାଇ ସେଠାରୁ ଡାହାଣକୁ ୪ କି.ମି. ଗଲା । ଶ୍ୟାମ ଶରତଠାରୁ ବର୍ତ୍ତମାନ କେତେ ଦୂରରେ ରହିଲା ?

୨ । ତଳେ କେତେକ ନଦୀର ନାମ ଓଲଟପାଲଟ କରି ଦିଆଯାଇଛି । ତା ସାଙ୍ଗେ ଯେଉଁ ଅ-ନଦୀ ନାମଟି ମିଶିଛି ବାହାର କର ।

ବଗୋରୀଦା, ସୀରାବାଣ, ବଇତୀରା, ସରାବଂଧା

---

ଚିକୁନ୍ ଘରକୁ ଫେରିଲା । ତାର ମା' ତାକୁ ଖୋଜି ବ୍ୟସ୍ତ ହେଉଥିଲେ । ଚିକୁନ୍‌କୁ ପାଇ ଖୁସିରେ ଗେଲ କଲେ । ଚିକୁନ୍ ସବୁ କଥା ବର୍ଣ୍ଣନା କରି କହିଲା । ତାକୁ ଯେଉଁ କଲମ ମିଳିଛି, ତାକୁ ମଧ୍ୟ ଦେଖାଇଲା । ମାଆ ଦେଖି ଖୁସି ହେଲେ, କହିଲେ, "ଦେଖିଲୁ, ମୁଁ କ'ଣ କହିଥିଲି , ଧୈର୍ଯ୍ୟ ଧର । କାହାକୁ ଡରନାହିଁ । ଦେଖିବୁ ସବୁ କାମରେ ତୁ ଆଗେଇଯିବୁ ।"

*କୟଳପଡ଼ା (ପାଟଣାସାହି), ଭାୟା-ଚଷାପଡ଼ା, କଟକ-୭୫୪୦୨୭*

✻✻

୩ । 'ଖ' ବିଭାଗର କେଉଁ ଶବ୍ଦଟି 'କ' ବିଭାଗର ଶବ୍ଦମାନଙ୍କ ସଙ୍ଗେ ମିଶିପାରିବ ?

କ-- ଫାଲ୍‌ଗୁନ, ଶ୍ରାବଣ, ଆଶ୍ୱିନ, ମାଘ

ଖ-- ବର୍ଷ, କାର୍ତ୍ତିକ, ଋତୁ, ଦିନ, ପକ୍ଷ

୪ । ବୃଦ୍ଧ ଶ୍ୟାମବନ୍ଧୁ ହରିଶଙ୍କର ପାଖରେ ବସିଥିବା ମହିଳାଙ୍କର ପିତା । ସେ ମଧ୍ୟ ବୁଲୁର ଅଜା । ମହିଳାଙ୍କର ଭଉଣୀ ବୁଲୁର କ'ଣ ହେବେ ?

୫ । ବାପାଙ୍କ ଠାରୁ ମାଆ ୫ ବର୍ଷ ସାନ । ବର୍ତ୍ତମାନ ବାପ ବୟସ ପୁଅ ବୟସର ୪ ଗୁଣ । ୩ ବର୍ଷ ତଳେ ପୁଅର ବୟସ ଥିଲା ୭ । ତେବେ ବର୍ତ୍ତମାନ ମାଆର ବୟସ କେତେ ?

୬ । ବସ୍‌ରେ ଜଣଙ୍କ ପାଇଁ ସୁଦ୍ଧା ସ୍ଥାନ ନାହିଁ, ତଥାପି ଜଣେ ବୃଦ୍ଧ ଓ ଗୋଟିଏ ବାର ତେର ବର୍ଷର ଝିଅ ବସ୍‌ରେ ଯିବା ପାଇଁ ଉଠିଲେ । ନିଜେ ଠିଆ ହୋଇ ଜଣଙ୍କୁ ସ୍ଥାନ ଦେବା ପାଇଁ ତୁମର ଇଚ୍ଛା ହେଲା । କାହାକୁ ଦେବ ? ତୁମେ ଜାଣ ଯେ

କ) ବିପଦବେଳେ ପିଲା ଏବଂ ମହିଳାମାନଙ୍କ କଥା ଆଗ ବିଚାର କରାଯାଏ ।

ଖ) ବୃଦ୍ଧ ବ୍ୟକ୍ତିକୁ ଆଶ୍ରୟ ଦେବା ପରମ ଧର୍ମ ।

ଗ) ଏ ଯୁଗରେ ସ୍ୱାର୍ଥତ୍ୟାଗର କିଛି ମୂଲ୍ୟ ନାହିଁ । ନିଜ କଥା ପ୍ରଥମ ।

*(ଉତ୍ତର ୩୪ ପୃଷ୍ଠାରେ)*

---

## ଦୃଷ୍ଟି ଭ୍ରମ

ଚିତ୍ରଟିକୁ ନିରୀକ୍ଷଣ କରନ୍ତୁ ।



ଶ୍ରୀ ତନ୍ମୟ ମିଶ୍ର

## ★★ ଅଧଃପତନ



ଦିନେ ବର୍ଦ୍ଧମାନ ମହାବୀରଙ୍କ ଶିଷ୍ୟମାନେ ଏକାଠି ବସିଥାନ୍ତି। ତାଙ୍କ ମଧ୍ୟରେ ମଣିଷର ଜୀବନଶୈଳୀ ଓ ଅଧଃପତନର କାରଣ ସମ୍ପର୍କରେ ଜୋରସୋର୍ ଆଲୋଚନା ଚାଲିଲା। ଆଲୋଚନାର ସାରାଂଶସ୍ୱରୂପ କେହି ଉତ୍ତରଦେଲା- ମଣିଷର ଲୋଭ ତାକୁ ନିମ୍ନଗାମୀ କରିଥାଏ ତ କେହି ଉତ୍ତରକଲା-- ଅହଂକାର ଦ୍ୱାରା ମଣିଷ ତଳକୁ ତଳକୁ ଯାଏ। ଆଉ କେହି କହିଲା ଯେ ମନୁଷ୍ୟ ମଧ୍ୟରେ ସଂଯମତା ଲୋପ ହେଲେ ଯାଇ ତା'ର ଅଧଃପତନ ଘଟେ। ଏଭଳି ମତଭେଦରେ କିଛି ବି ନିର୍ଣ୍ଣୟ ହୋଇପାରିଲା ନାହିଁ। ଶେଷରେ ସମସ୍ତେ ମହାବୀରଙ୍କ ନିକଟରେ ପହଞ୍ଚିଲେ।

ମହାବୀର ଶିଷ୍ୟମାନଙ୍କୁ କହିଲେ-- "ପ୍ରଥମେ ତୁମେମାନେ ମୋର ଏକ କଥାର ଉତ୍ତରଦିଅ। ମନେକର ମୋ ପାଖରେ ଏକ କମଣ୍ଡଳୁ ଅଛି, ସେଥିରେ ବହୁତ ପାଣି ଧରିପାରିବ। ତାକୁ ଯଦି ଖାଲି କରି ନଦୀ ମଧ୍ୟରେ ଭସାଇ ଦିଆଯିବ, ତାହା କ'ଣ ବୁଡ଼ିଯିବ ?" ସମସ୍ତେ ଏକସ୍ୱରରେ ମନା କଲେ। "ଯଦି ମୁଁ ସେଥିରେ କୌଣସି ପଟରୁ ଏକ କଣା କରିଦିଏ, ତେବେ ?" ପୁଣି ପଚାରିଲେ ମହାବୀର -- "ତେବେ ତାହା ନଦୀରେ ନିଶ୍ଚୟ ବୁଡ଼ିଯିବ।" ଉତ୍ତରଦେଲେ ମହାବୀରଙ୍କ ଶିଷ୍ୟମାନେ।

ଏହା ଶୁଣି ମହାବୀର କହିଲେ-- "ଠିକ୍ କହିଛ। ମଣିଷର ଜୀବନ ଏକ କମଣ୍ଡଳୁ ପରି। ସେଥିରେ ଯେ କୌଣସି ପଟରୁ ଦୁର୍ଗୁଣରୂପକ ଛିଦ୍ର ହେଲେ ତାକୁ ବୁଡ଼ାଇଦେବାର ଭୟ ରହିଛି। ତେଣୁ ଏହି କାମ, କ୍ରୋଧ, ଲୋଭ, ମୋହ, ଅହଂକାର ଆଦି ଦୁର୍ଗୁଣରୁ ଦୂରେଇ ରହିଲେ ଯାଇ ମନୁଷ୍ୟ ଦେବତ୍ୱ ପ୍ରାପ୍ତ ହୋଇପାରିବ, ଏଥିରେ ସନ୍ଦେହ ନାହିଁ।

## ★★ ତୀର୍ଥଯାତ୍ରା

ଉତ୍କଳର ଅନ୍ୟତମ ବରପୁତ୍ର ରାଜା ଶୈଳେନ୍ଦ୍ର ନାରାୟଣ ଗରିବ ମେଧାବୀ ଛାତ୍ର ତଥା ଦୁଃଖୀ- ରଙ୍କିମାନଙ୍କୁ ସହାୟତା ଦେବା ନିମନ୍ତେ ଏକ ଟ୍ରଷ୍ଟ୍ ବୋର୍ଡ ଗଠନ କରିଥାନ୍ତି। ଫଳରେ ଏଥିଯୋଗୁଁ ଅନେକ ଛାତ୍ର ପାଠ ପଢ଼ିବା ପାଇଁ ଉତ୍ସାହିତ ତଥା ଉପକୃତ ହେବା ସହିତ ଅନେକ ରୋଗୀ ଚିକିତ୍ସା ପାଇପାରୁଥାନ୍ତି।



ଧୀରେ ଧୀରେ ଏହାର ସୁନାମ ବ୍ୟାପକ ହେବାରୁ ଜଣେ ଧାର୍ମିକ ବ୍ୟକ୍ତି ତୀର୍ଥଯାତ୍ରାରେ ମନ ବଳାଇ ଶୈଳେନ୍ଦ୍ର ନାରାୟଣଙ୍କ ଦ୍ୱାରସ୍ଥ ହେଲେ ଓ କିଛି ଅର୍ଥର ସାହାଯ୍ୟ ପାଇଁ ମଧ୍ୟ ନିବେଦନ କଲେ। ଏକଥା ଶୁଣି ରାଜା ଉକ୍ତ ତୀର୍ଥଯାତ୍ରାରେ ବାହାରିଥିବା ବ୍ୟକ୍ତିଜଣଙ୍କୁ ପ୍ରଶ୍ନ କଲେ-- ତୁମେ କେବେ

ଗ୍ରାମଦେବତୀଙ୍କ ପାଖକୁ ଯାଇଛ ? ବର୍ଷରେ ଅନ୍ତତଃ କେତେଥର ନିଜ ଅଞ୍ଚଳରେ ଥିବା ଗ୍ରାମଦେବତୀଙ୍କ ପୀଠ ପରିକ୍ରମା କରିଛ ? ଆଜି ତୀର୍ଥଯାତ୍ରାରେ ବାହାରି ପଡ଼ିଛ ! ପ୍ରଥମେ ନିଜ ଗ୍ରାମ, ନିଜ ପାଖର ତୀର୍ଥ ପରିକ୍ରମା କର, ତା'ପରେ ଯାଇ ଅନ୍ୟ ତୀର୍ଥ ପର୍ଯ୍ୟଟନରେ ବାହାରିବ ।

ଏତକ କହି ତୀର୍ଥଯାତ୍ରୀଜଣଙ୍କୁ କିଛି ଆର୍ଥିକ ସହାୟତା ଦେବାର ବ୍ୟବସ୍ଥା କରାଇଲେ । ରାଜାଙ୍କ କଥାରେ ଭରିହୋଇ ରହିଥିବା ଅନ୍ତର୍ନିହିତ କଥାକୁ ତୀର୍ଥପ୍ରେମୀଜଣଙ୍କ ଖୁବ୍ ହୃଦୟଙ୍ଗମ କରୁଥିଲେ । ପ୍ରକୃତରେ ଆମେ ନିଜ ଭିତରେ ଥିବା ଆତ୍ମାକୁ ଚିହ୍ନିନୁ । ଘରେ ଥିବା ଗୁରୁଜନଙ୍କୁ ଭକ୍ତି କରିବା ଶିଖିନୁ ତଥା ନିଜ ଆଖପାଖରେ ଥିବା ପୀଠର ମହତ୍ତ୍ୱକୁ ବିଶ୍ଳେଷଣ କରିବା ଜାଣିନୁ । ତା'ହେଲେ ତୀର୍ଥଯାତ୍ରା ଆମ ପାଇଁ ଏକ ସାଧାରଣ ଭ୍ରମଣ ହେବ ନାହିଁ କି ?

*ଗୀରିୟା, ରାଜକନିକା- ୭୫୪୨୨୦* ⁂



୧ । ଘରି ଘିରି ଚାଲେ ଉପର ପାଟି
ତଳ ପାଟି ଥାଏ କାମୁଡ଼ି ମାଟି ।

୨ । ପାଞ୍ଚମାଲିକର ଚାକର ମୁହିଁ
ଜିଭ ଦୁଇଫାଳ ସାପ ନୁହଁଇ
ହନୁ ନୁହେଁ ମୋର କାଳିଆ ମୁହଁ
ମତେ ନ ଜାଣିଲେ ପାଠୁଆ ନୁହଁ ।

୩ । ଅଧାଖିଆ ବେଳେ ଦିଶଇ କଳା
ପୂରା ଖାଇଦେଲେ ଦିଶଇ ଧଳା ।

*(ଉତ୍ତର ୪୪ ପୃଷ୍ଠାରେ)*




ଶ୍ରୀ ଜ୍ୟୋତିରଂଜନ ବିଶ୍ୱାଳ

୧ । ପ୍ରସିଦ୍ଧ APPLE କଂପ୍ୟୁଟରର ଉଦ୍ଭାବକଙ୍କ ନାମ କ'ଣ?

୨ । ଗଛରେ ବସା ବାନ୍ଧୁଥିବା ବତକ (duck) ର ନାମ କ'ଣ?

୩ । ଭାରତର ପ୍ରଥମ ଜଳବିଦ୍ୟୁତ ଉତ୍ପାଦନ କେନ୍ଦ୍ରର ନାମ କ'ଣ ?

୪ । ବିନା ଅମ୍ଳଜାନରେ ଏଭେରେଷ୍ଟ ଶୃଙ୍ଗ ଆରୋହଣ କରିଥିବା ପ୍ରଥମ ଭାରତୀୟଙ୍କ ନାମ କ'ଣ?

୫ । 'କୁଲଡିହା ଅଭୟାରଣ୍ୟ' ଆମ ରାଜ୍ୟର କେଉଁ ଜିଲ୍ଲାରେ ଅବସ୍ଥିତ ?

୬ । ଡକ୍ଟର ଜନ୍ ପେମ୍ବରଟନ୍ (Dr. John Pemberton) ୧୮୮୬ ମସିହାରେ ପ୍ରଚଳନ କରିଥିବା ମୃଦୁପାନୀୟ (Soft Drink) ର ନାମ କ'ଣ ?

୭ । ଦର୍ଶନଶାସ୍ତ୍ରର ଜନକ (Father of Philosophy) ଭାବରେ କିଏ ପରିଚିତ?

୮ । ପୃଥିବୀର ଗଭୀରତମ ହ୍ରଦର ନାମ କ'ଣ ?

୯ । 'Sanctuary' ପୁସ୍ତକର ରଚୟିତା କିଏ ?

୧୦ । 'ଟ୍ୟୁନସ୍' କେଉଁ ଦେଶର ରାଜଧାନୀର ନାମ ଅଟେ ?

*ଦୁର୍ଗାପୁର, ତାଳଚେର, ଅନୁଗୁଳ-୭୫୯୧୦୦*



*(ଉତ୍ତର ୪୦ ପୃଷ୍ଠାରେ)*




# ସେମାନେ ତ ମୋ ପରିବାରର ଲୋକ ଭଳି

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

୨୦୧୧ ମସିହା ସେପ୍‌ଟେମ୍ବର ୭ ତାରିଖ ସକାଳ ଦଶଟା। ଦିଲ୍ଲୀ ହାଇକୋର୍ଟର ୫ ନମ୍ବର ଫାଟକରେ ବ୍ରିଫ୍‌କେଶ୍ ବୋମା ବିସ୍ଫୋରଣ ହେଲା। ସେତେବେଳେ ବିଜୟ୍ କେ. ସୋନ୍ଧି ସେଇ ଆଖପାଖରେ ନ ଥିଲେ। ବିଜୟ୍ ସୋନ୍ଧି ଜଣେ ପୁରୁଣା ଆଡ୍‌ଭୋକେଟ୍ ଏବଂ ଦିଲ୍ଲୀ ବାର୍ କାଉନ୍‌ସିଲ୍‌ର ସଭ୍ୟ । ସେହି ସମୟରେ ସେ ନିଜର କାର୍ ଚଳାଇ ଯାଉଥିଲେ। ହଠାତ୍ ବାଜି ଉଠିଲା ତାଙ୍କର ମୋବାଇଲ୍ ଫୋନ୍। ଫୋନ୍ କରିଥିଲେ ତାଙ୍କର ଜଣେ ଆତ୍ମୀୟ। । ବିସ୍ଫୋରଣରେ ତାଙ୍କର କିଛି କ୍ଷୟକ୍ଷତି ହୋଇଛି କି ନାଁ ତାହା ପଚାରି ବୁଝିବା ଥିଲା ସେ ଫୋନ୍ କରିବାର ଉଦ୍ଦେଶ୍ୟ। 'ହଁ ମୁଁ ଠିକ୍ ଅଛି'-- ବାସ୍ ଏତିକି। ସୋନ୍ଧି କାର୍ ଛୁଟେଇଲେ ହାଇକୋର୍ଟ ଅଭିମୁଖେ।

ଅଳ୍ପ କେତେ ମିନିଟ୍ ଭିତରେ ପହଞ୍ଚିଗଲେ ସେଠି। ବିସ୍ଫୋରଣ ସ୍ଥଳ ଥିଲା ବଡ଼ ଭୟଙ୍କର, ଅତି ମର୍ମନ୍ତୁଦ। କେଉଁ ଲୋକର ହାତ ଛିଣ୍ଡି ଦେହରୁ ଅଲଗା ହୋଇଯାଇଥିଲା ତ କାହାର ଅଲଗା ହୋଇଯାଇଥିଲା ଦୁଇଟିଯାକ ଗୋଡ଼। ଆହତ ବ୍ୟକ୍ତିମାନଙ୍କ ବିକଳ ଚିତ୍କାରରେ କମ୍ପୁଥିଲା ଖଣ୍ଡମଣ୍ଡଳ। ରକ୍ତ ଦେଖିଲେ ଖୁବ୍ ଛାନିଆ ହୋଇପଡ଼ନ୍ତି ସୋନ୍ଧି; କିନ୍ତୁ ସେଠାରେ ପହଞ୍ଚି ସେ କାର୍‌ରୁ ଡେଇଁ ପଡ଼ିଲେ। ଅତି ଗୁରୁତର ଭାବରେ ଖଣ୍ଡିଆଖାବରା ହୋଇଥିବା ଜଣେ ବ୍ୟକ୍ତିକୁ ଉଠେଇନେଲେ କାର୍ ଭିତରକୁ। ତା'ପରେ ଛୁଟିଲେ ଡାକ୍ତରଖାନା।

ଡାକ୍ତରଖାନାରେ ତାଙ୍କୁ ଭର୍ତ୍ତି କରିଦେଇ ପୁଣି କାର୍ ଚଳେଇଲେ ୫ ନମ୍ବର ଫାଟକ ନିକଟକୁ। ସେ ଓ ତାଙ୍କର ଆଡ୍‌ଭୋକେଟ୍ ବନ୍ଧୁମାନେ ନିଜ ନିଜ କାର୍‌ରେ ନେଇ ସବୁ ଆହତ ବ୍ୟକ୍ତିଙ୍କୁ ଡାକ୍ତରଖାନାରେ ପହଞ୍ଚାଇଦେଲେ। ଆହତ ବ୍ୟକ୍ତିମାନେ ରକ୍ତରେ ସେମାନଙ୍କର ଜାମାପ୍ୟାଣ୍ଟ୍, କଳାକୋଟ୍ ସବୁ ରକ୍ତ ଜୁଡୁବୁଡୁ; ହେଲେ ଏଥିପ୍ରତି ସେମାନଙ୍କର ଖାତର ନ ଥିଲା।

ସେମାନଙ୍କୁ ଡାକ୍ତରଖାନାରେ ଡାକ୍ତରମାନଙ୍କ ଜିମା କରିଦେଇ ଧାଇଁଲେ ରକ୍ତଭଣ୍ଡାରକୁ। ଆହତ ବ୍ୟକ୍ତିମାନଙ୍କ ପାଇଁ ସେଠାରେ ରକ୍ତ ଦେଇସାରି ଫେରିଆସିଲେ ପୁଣି ଫାଟକ ନମ୍ବର ୫କୁ। କାଳେ ବିସ୍ଫୋରଣ ସଂକ୍ରାନ୍ତ ପ୍ରମାଣ ହଜିଯିବ, ସେଥିପାଇଁ ବିସ୍ଫୋରଣ ସ୍ଥଳକୁ କର୍ମଚାରୀମାନଙ୍କ ସାହାଯ୍ୟରେ ଘେରେଇଦେଲେ।

ସୋନ୍ଧି ଓ ତାଙ୍କ ଆଡ୍‌ଭୋକେଟ୍ ବନ୍ଧୁମାନଙ୍କ ସ୍ୱତଃସ୍ଫୂର୍ତ୍ତ ତଥା ସମୟୋପଯୋଗୀ ସେବାକାର୍ଯ୍ୟ ଯୋଗୁ ଗୁରୁତର ଭାବରେ ଆହତ ଅନେକ ବ୍ୟକ୍ତିଙ୍କ ଜୀବନ ବଞ୍ଚିଗଲା।

ଯେଉଁମାନଙ୍କ ଜୀବନ ବଞ୍ଚିଗଲା, ସେମାନେ



ସମସ୍ତେ ଥିଲେ ସେହି ଆଡ଼୍‌ଭୋକେଟ୍‌ମାନଙ୍କର ପୁରାପୂରି ଅଜଣା, ଅଚିହ୍ନା ।

ଏ ସମ୍ପର୍କରେ ସୋଦ୍ଧିଙ୍କ କାର୍ଯ୍ୟକୁ ଲୋକେ ଖୁବ୍ ବାହାବା ଦେଲେ; କିନ୍ତୁ ସୋଦ୍ଧିଙ୍କୁ ଏ ପ୍ରକାର ପ୍ରଶଂସା ଆଦୌ ଭଲ ଲାଗିଲାନି । ବରଂ ତାଙ୍କର ମନ୍ତବ୍ୟ ଥିଲା-- "୨୦ ବର୍ଷରୁ ବେଶୀ କାଳ ଧରି ମୁଁ ଏହି ହାଇକୋର୍ଟରେ ଓକିଲାତି କରି ଆସୁଛି । ଓକିଲାତି କରି ଯାହା ରୋଜଗାର କରେ, ସେଇଥିରେ ମୋ ପିଲାଛୁଆ ଚଳୁଛନ୍ତି । ତେଣୁ ହାଇକୋର୍ଟକୁ ବି ମୁଁ ମୋ ନିଜ ଘର ଭାବରେ ମନେକରେ ଏବଂ ସମ୍ମାନ ଦିଏ । ସେଥିପାଇ ମୋ ବିଚାରରେ ପ୍ରତ୍ୟେକ ମୁଦେଇ-ମୁଦାଲା ମୋ ପରିବାରର ଲୋକ । ସୁତରାଂ ବୋମା ବିସ୍ଫୋରଣ ଯୋଗୁ ଯେଉଁମାନେ ଆହତ ହୋଇ ପଡ଼ିଲେ, ସେମାନଙ୍କୁ ମୁଁ ମୋ ପରିବାରର ଲୋକ ବୋଲି ଭାବି ସେମାନଙ୍କ ହିତ ଲାଗି ମୁଁ ମୋ କର୍ତ୍ତବ୍ୟ ହିଁ କରିଛି । ତେଣୁ ଏହି କାର୍ଯ୍ୟ ପାଇଁ ମୋତେ ପ୍ରଶଂସା କରିବାର ଯଥାର୍ଥତା କେଉଁଠି ? ତାହା ବ୍ୟତୀତ ମୁଁ ତ ଏକମାତ୍ର ବ୍ୟକ୍ତି ନୁହେଁ, ମୋ' ସହିତ ଯୋଗ ଦେଇ ଆହୁରି ଅନେକ ବି ଆହତମାନଙ୍କୁ ସାହାଯ୍ୟ କରିଛନ୍ତି । ବରଂ ଭଗବାନ ଏପରି ଏକ ମହତ୍ କାର୍ଯ୍ୟ ପାଇଁ ମୋତେ ସୁଯୋଗ ଦେଇଥିବାରୁ ମୁଁ ଭଗବାନଙ୍କ ନିକଟରେ ବିଶେଷ ଭାବରେ କୃତଜ୍ଞ ।" କି ମହତ୍ ବିଚାର !

*'ଅଭୀପ୍‌ସା', ସେକ୍ଟର-୬, ପ୍ଲଟ୍ ନଂ-୧୧୩୧, ଅଭିନବ ବିଡ଼ାନାସୀ, କଟକ-୭୫୩୦୧୪*

# ବରଷା, ଶୀତ



ଶ୍ରୀମତୀ କୁମୁଦଲତା ମହାନ୍ତି

ବର୍ଷାରାଣୀ ପଚାରିଲା ଶୀତରାଣୀକୁ
"କେବେ ତୁ ଆସିବୁ କହ ଏ ଧରଣୀକୁ" ।
ଶୀତରାଣୀ କହେ "ଯେବେ ତୁ ଆସିଥିଲୁ
ରାସ୍ତାଘାଟ ଓଦା, ସନ୍ତସନ୍ତିଆ କଲୁ ।
ଜାଣିଛୁ ତ ପଚାରୁଛୁ କହ କାହିଁକି ?
ତୁ ଯିବା ପରେ ପରେ ମୁଁ ଆସେ ଏଠିକି ।
ପାଣିକାଦୁଅ ତୋ ପାଇଁ ହୁଅଇ ଧରା
ମୁଁ ଆସିଲେ ପଡ଼ିଯାଏ କଅଁଳ ଖରା ।
ସୁନ୍ଦର ଦିଶେ ଧରଣୀ ଫଳ, ଫୁଲରେ
ଚାଷୀ ହଳ ଧରି ଚାଲେ ଧାନ ବିଲରେ ।"
ଶୀତରାଣୀ କଥା ଶୁଣି ବର୍ଷା ହସିଲା
ଶୀତର ଭାରି ଗରବ ଜାଣିପାରିଲା ।
ସବୁ କଥା ଶୁଣି ହସି ବରଷା କହେ,
"ମୁଁ ନ ଥିଲେ ଜଳ ନାହିଁ ଏ ଧରା ଦେହେ ।
ଜଳ ବିନା ଫସଲ ତ ସମ୍ଭବ ନୁହେଁ
ଜଳକୁ ମୁଁ ମାଟି ତଳେ ସାଇତିଥାଏ ।
ସେଥିପାଇଁ ସିନା ଫୁଲଫଳରେ ଭରା
ଶୋଭାର ଭଣ୍ଡାର ହୁଏ, ସୁନ୍ଦର ଧରା ।"
ବର୍ଷା କଥା ଶୁଣି ଶୀତ ମଉନ ହେଲା
ବର୍ଷାର ଉପକାରିତା ବୁଝିପାରିଲା ।

*ନୀଳାଦ୍ରିବିହାର,*
*ଭୁବନେଶ୍ୱର- ୨୧*



# ଅତିଥି ସତ୍କାର

ସୁଶ୍ରୀ ସୁଜାତା ସାହୁ

ବହୁତ ଦିନର କଥା । ସେତେବେଳେ ସବୁଆଡ଼େ ରାଜତନ୍ତ୍ର ଚାଲୁଥିଲା । ରାଜାଙ୍କ ଗୁଣ ଅନୁସାରେ ରାଜ୍ୟବାସୀ ସୁଖରେ କି ଦୁଃଖରେ କାଳ କାଟୁଥିଲେ। ଜମ୍ବୁଦ୍ୱୀପର ଗୋଟିଏ ଛୋଟିଆ ରାଜ୍ୟ କଥା । ସେଠାକାର ରାଜା ଅତ୍ୟନ୍ତ ଧାର୍ମିକ। ସୁଖରେ ପ୍ରଜା ପାଳୁଥା'ନ୍ତି। ଅତିଥି, ଅଭ୍ୟାଗତ ଆସିଲେ ରାଜା ସେମାନଙ୍କୁ ଦେବତା ଜ୍ଞାନରେ ଅଭ୍ୟର୍ଥନା ନିଜେ କରିଥା'ନ୍ତି।

ରାଜା ଦିନେ ଏକାଦଶୀ ବ୍ରତ କରୁଥା'ନ୍ତି। ନିୟମ ଅନୁସାରେ ପୂଜା ସରିଲେ କେବଳ ଠାକୁରଙ୍କୁ ଭୋଗ ହୋଇଥିବା ଅନ୍ନ-ବ୍ୟଞ୍ଜନ ରାଜା ଭୋଜନ କରିବେ; ଅନ୍ୟ କୌଣସି ପଦାର୍ଥ ନୁହେଁ। ବିଧିମୁତାବକ ପୂଜା ସରିଲା। ରାଜା ଭୋଗସାମଗ୍ରୀ ନେଇ ଭୋଜନ ପାଇଁ ପ୍ରସ୍ତୁତ ହେଲେ।



ହଠାତ୍ ଜଣେ ଭୋକିଲା ଲୋକ ରାଜାଙ୍କ ନିକଟକୁ ଆସି ଖାଇବା ପାଇଁ ମାଗିଲେ। ରାଜା ତାଙ୍କୁ ଆଗ୍ରହର ସହିତ ଭୋଜନ ନିମନ୍ତେ ବସାଇଲେ। ପତ୍ର ପକାଇ ଥାଳିରୁ କିଛି ଅନ୍ନ-ବ୍ୟଞ୍ଜନ ଅତିଥିଙ୍କୁ ବାଢ଼ିଦେଇ ନିଜ ପାଇଁ ବାଢ଼ିବାକୁ ଯାଉଛନ୍ତି, ବାହାରେ କାହାର ପାଟି ଶୁଣି ଅଟକିଗଲେ।

ଦ୍ୱାରଦେଶରେ ଦେଖିଲେ ଜଣେ ଜୀର୍ଣ୍ଣଶୀର୍ଣ୍ଣ ମଣିଷ, ପେଟ ପିଠିକୁ ଲାଗିଯାଇଛି। ସାଥିରେ ଗୋଟିଏ ରୋଗୀଣା କୁକୁର। ଦୁହିଁଙ୍କ ପେଟରେ କିଛି ନାହିଁ। ରାଜାଙ୍କୁ ଦେଖି ଲୋକଟି ବିକଳରେ କିଛି ଖାଇବାକୁ ମାଗିଲା। ରାଜା ତାଙ୍କ ବଳକା ଭୋଗରୁ କିଛି ଲୋକଟିକୁ ଖାଇବାକୁ ଦେଲେ। ଯାହା ବଳିଲା, ଭୋକିଲା କୁକୁରଟିକୁ ଦେଇଦେଲେ।

ରାଜାଙ୍କ ପାଖରେ ଆଉ ଭୋଗ ନାହିଁ। ସେଥିପାଇଁ ଆଦୌ ଚିନ୍ତା ନ କରି ପାଣିଗ୍ଲାସ୍‌ଟିଏ ପିଇବାକୁ ଯାଉଛନ୍ତି, ଜଣେ ଲୋକ ଧଇଁସଇଁ ହୋଇ ସେଠାରେ ପହଞ୍ଚିଲା। ଶୋଷରେ ତା' ତଣ୍ଟି ଶୁଖିଯାଉଥାଏ। ପାଟି ଶୁଖି ଅଠା ଅଠା, ପଦେ କଥା ବାହାରୁନି। ତାଳି ମାରି ଇସାରାରେ ପାଣିମୁନ୍ଦିଏ ପିଇବା ପାଇଁ ମାଗିଲା। ରାଜା ଆନନ୍ଦ ମନରେ ପାଣିଗ୍ଲାସଟି ତା' ହାତକୁ ବଢ଼ାଇଦେଲେ। ପାଣି ପିଇ ଲୋକଟି ଚାଲିଗଲା।

ରାଜା ନିଜର ସବୁତକ ଖାଦ୍ୟ ଓ ଜଳ ଆଗନ୍ତୁକମାନଙ୍କୁ ପରମ ଆନନ୍ଦରେ ଦେଇଦେଲେ। ରାଜନବରରେ ଖାଦ୍ୟପାନୀୟର ସିନା ଅଭାବ ନାହିଁ, ହେଲେ ଭୋଗ ଆସିବ କେଉଁଠୁ ? ଶେଷରେ ରାଜା କିଛି ନ ଖାଇ, ନ ପିଇ, ନିର୍ଜଳ ଉପବାସରେ ସେଦିନ ରହିଲେ।

ଦିନସାରା ମୂଳରୁ ଶେଷ ପର୍ଯ୍ୟନ୍ତ ରାଜାଙ୍କର ଏ ବଦାନ୍ୟତା ସେଦିନର ସେ ପରିବେଶକୁ ପବିତ୍ର କରିଦେଇଥିଲା । ତେଣୁ ଧନୀ ହେଉ କି ଗରିବ ହେଉ, ଯାହାର ଅନ୍ତରରେ ଅନ୍ୟ ପ୍ରତି ସହାନୁଭୂତି ଓ ଦୟା ରହିଥାଏ, ଈଶ୍ୱରଙ୍କର କୃପାଦୃଷ୍ଟି ତା' ଉପରେ ପଡ଼ିଥାଏ ।

କ୍ରମେ ଦିନ ଯାଇ ରାତି ହେଲା । ଯଥାକାଳରେ ରାଜା ନିଦ୍ରା ଗଲେ । ନିଶାର୍ଦ୍ଧରେ ରାଜା ସ୍ୱପ୍ନଟିଏ ଦେଖିଲେ । କେହିଜଣେ ଦେବତା ରାଜାଙ୍କ ଅତିଥି ସତ୍କାରରେ ଅତ୍ୟନ୍ତ ଆନନ୍ଦ ପାଇବା କଥା ଶୁଣାଇବା ସହିତ ରାଜା ଏବଂ ରାଜ୍ୟବାସୀଙ୍କର କୁଶଳ କାମନା କଲେ ।

ରାଜାଙ୍କ ନିଦ ଭାଙ୍ଗିଗଲା । ଦେଖିଲେ, କେହି କେଉଁଠି ନାହାନ୍ତି; ମାତ୍ର କକ୍ଷଟି ଦେବୋପମ ସୁଗନ୍ଧରେ ଭାସିଉଠୁଥାଏ । ରାଜା ଭଗବାନ୍‌ଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ି ପୁଣି ନିଦ୍ରା ଗଲେ ।

*ଶୁଭଶ୍ରୀ ପ୍ରିଣ୍ଟର୍ସ, ଗୋଇଲୁଣ୍ଡି ମେନ୍ ରୋଡ୍, ବ୍ରହ୍ମପୁର-୭୬୦୦୦୪*



ଶିକ୍ଷକ ଶ୍ରେଣୀ ଗୃହରେ କହିଲେ-- ''ପିଲାଏ 'ଆମ ପାଠ ବହି'ର ୧୦ ପୃଷ୍ଠା ଖୋଲି ବହିକୁ ଚାହିଁ ମୁଁ ଆଗରେ ଯାହା କହିବି, ତୁମେ ପଛରେ ଠିକ୍ ସେଇଆ କହିବ । ଭୁଲ୍ କଲେ ଦଣ୍ଡ ପାଇବ ।''

ଶିକ୍ଷକ ବହିରୁ ଯାହା ପଢ଼ିଲେ, ପିଲାମାନେ ଏକ-ସ୍ୱରରେ ସେଇଆ କହିଲେ । ଏହି ସମୟରେ ସ୍କୁଲ ବଗିଚାରେ ଗାଈଟିଏ ପଶି ଫଳଗଛ ଖାଇଯାଉଥିବାର ଶିକ୍ଷକ ଦେଖିଲେ । ପଢ଼ାଇବା ଭିତରେ ସେ ହଠାତ୍ କହିଦେଲେ, "ଆରେ କିଏ ଅଛରେ, ଗାଈଟାକୁ ହୁରୁଡ଼ାଇ ଦିଅ ।'' ପିଲାମାନେ ମଧ୍ୟ ଏକାବେଳକେ ବଡ଼ ପାଟିରେ କହି ଉଠିଲେ, "ଆରେ କିଏ ଅଛରେ, ଗାଈଟାକୁ ହୁରୁଡ଼ାଇ ଦିଅ !''

**--ଶ୍ରୀ ଗଜେନ୍ଦ୍ର ବେହେରା,** *ମହମ୍ମଦପୁର*

---



## ଅଛି-ନାହିଁ

ଦୁଇଟି ଚିତ୍ର ମଧ୍ୟରେ ଅତି କମ୍‌ରେ ୭ଟି ପ୍ରଭେଦ ଅଛି । ବାହାର କରନ୍ତୁ ତ !

(ଉତ୍ତର ୫୨ପୃଷ୍ଠାରେ)

# ତିନି ପିଲାଙ୍କର ଦରଦୀ ପ୍ରାଣ

ଡଃ ସତ୍ୟ ରାୟ

ହୃଦ୍‌ରୋଗରେ ପୀଡ଼ିତ ହୋଇ ରାଜଧାନୀ ଭୁବନେଶ୍ୱରର ଏକ ଘରୋଇ ଡାକ୍ତରଖାନାରେ ଚିକିତ୍ସିତ ହେବାର ୧୪ ଦିନ ପରେ ଘରକୁ ଫେରିଥାଏ। ପୂରା ତିନି ମାସ ସମ୍ପୂର୍ଣ୍ଣ ବିଶ୍ରାମ ନେବାକୁ ଡାକ୍ତର ପରାମର୍ଶ ଦେଇଥାଆନ୍ତି। ତେଣୁ ଶେଯ ଉପରେ ପଡ଼ି ରହିଥାଏ। ଶୀଘ୍ର ସୁସ୍ଥ କରିବା ପାଇଁ ଈଶ୍ୱରଙ୍କୁ ବାରମ୍ବାର ପ୍ରାର୍ଥନା କରୁଥାଏ। ଏହା ସହ ଡାକ୍ତରଙ୍କ ପରାମର୍ଶ ମୁତାବକ ଔଷଧ ଓ ଖାଦ୍ୟ ମଧ୍ୟ ସେବନ କରୁଥାଏ।

ଡାକ୍ତରଖାନାରୁ ଫେରିବାର ଦୁଇଦିନ ପରେ ଦିନେ ସକାଳେ ମୁଁ ବିଶ୍ରାମ ନେଉଥିବାବେଳେ ହଠାତ୍ ୧୦ ବର୍ଷର ମିଟୁଲ୍ ମୋ କୋଠରିକୁ ଅତି ସନ୍ତର୍ପଣ ସହକାରେ ପ୍ରବେଶ କରି ପ୍ରାୟ ଏକ ଫୁଟ୍ ଲମ୍ବ, ଏକ ଫୁଟ୍ ଓସାରର ଗୋଟିଏ କାର୍ଡବୋର୍ଡ ମୋତେ ଧରାଇଦେଲା। ସେଥିରେ ସେ ଗୋଟିଏ ସୁନ୍ଦର ଫୁଲ ଓ ଉଦୟ ସୂର୍ଯ୍ୟର ରଙ୍ଗିନ ଚିତ୍ର ଆଙ୍କି 'ଆପଣଙ୍କର ଦ୍ରୁତ ଆରୋଗ୍ୟ କାମନା କରୁଛି' ବୋଲି ଲେଖିଥାଏ । ମୁଁ ତାକୁ ପଢ଼ି ଆନନ୍ଦରେ ମିଟୁଲକୁ ଧନ୍ୟବାଦ ଜଣାଇ କୋଳେଇନେଲି। ପିଲାଟିର ମୁହଁରେ ସ୍ମିତହାସ୍ୟ ଓ ମିଠା ମିଠା କଥା ମୋ ଯନ୍ତ୍ରଣାକୁ ଉପଶମ କଲା ଭଳି ମନେହେଲା। ପିଲାଟିର ଦରଦୀ ପ୍ରାଣ ବାସ୍ତବିକ୍ ମୋତେ ଅଭିଭୂତ କରିଦେଇଥିଲା। କି ଚମତ୍କାର ସଂସ୍କାର ! କିଛି ସମୟ ପରେ ମିଟୁଲ ସ୍କୁଲ ସମୟ ହୋଇଯିବ କହି ଆମଘରୁ ଫେରିଯାଇଥିଲା। ମୁଁ ଆଖି ବୁଜି ତା'ର କଲ୍ୟାଣ ପାଇଁ ଈଶ୍ୱରଙ୍କ ନିକଟରେ ହାତଯୋଡ଼ି ପୁଣି ବିଶ୍ରାମ ନେଲି।

ସଂଧ୍ୟାରେ ପହଞ୍ଚିଥିଲେ ଦୁଇ ଜାଆଁଳା ଭଉଣୀ କ୍ରିଷ୍ଟା ଓ କୋମଲ। ଦୁଇଜଣଙ୍କ ହାତରେ ମଧ୍ୟ ଥିଲା ଦୁଇଟି ଧଳା କାର୍ଡବୋର୍ଡ ଉପରେ ଅଙ୍କାଯାଇଥିବା ଦୁଇଟି ସୁନ୍ଦର ଚିତ୍ର ଓ ତା' ତଳକୁ ଲେଖାଥିଲା, ''ଦ୍ରୁତ ଆରୋଗ୍ୟ କାମନା ପାଇଁ ଈଶ୍ୱରଙ୍କ ନିକଟରେ ଆମର ପ୍ରାର୍ଥନା।'' ସେମାନେ କାର୍ଡବୋର୍ଡ ଦୁଇଟିକୁ ମୋ ହାତକୁ ବଢ଼ାଇଦେବା ମାତ୍ରେ ମୁଁ ଗଦ୍‌ଗଦ୍ ହୋଇ ଉଠିଥିଲି। ଶଯ୍ୟା ଉପରେ ଥାଇ ଦୁଇ ଭଉଣୀଙ୍କୁ ସାମାନ୍ୟ କୋଳେଇ ଧନ୍ୟବାଦ ଜଣାଇଲି। ମୋ ମନ ଓ ହୃଦୟରେ ଖେଳି ଯାଇଥିଲା ଅନେକ ଆଶା ଓ ଆଶ୍ୱାସନା। ସେମାନଙ୍କ ଦରଦୀ ହୃଦୟ ମୋତେ ବେଶ୍ ବିମୋହିତ କରିଥିଲା। ସେମାନଙ୍କ କଲ୍ୟାଣ ଲାଗି ପ୍ରାର୍ଥନା କରି ପରମେଶ୍ୱରଙ୍କ ନିକଟରେ ହାତ ଯୋଡ଼ିଲି। ହୃଦ୍‌ଯନ୍ତ୍ରଣାରେ କଷ୍ଟ ପାଇଁ ରୋଗଶଯ୍ୟାରେ ପଡ଼ିଥିବାଳେ ତିନି କୋମଳମତି ଶିଶୁଙ୍କର ଆରୋଗ୍ୟ କାମନା ମୋ'ପାଇଁ ଭରି ଦେଇଥିଲା ଅନେକ ଆଶା, ଆତ୍ମବିଶ୍ୱାସ ଓ ଦୃଢ଼ ଇଚ୍ଛାଶକ୍ତି। ମୁଁ ଯେ ଏଥି ପୂର୍ବରୁ ଆଶୁ ଆରୋଗ୍ୟ ଲାଭ କରି ସ୍ୱାଭାବିକ ଜୀବନଯାପନ କରିବାକୁ ଶୀଘ୍ର ସମର୍ଥ ହେବି, ଏହି ଦ୍ରୁତ ଆଶା ମୋ ମନରେ ସଂଚାରିତ ହୋଇଥିଲା। ପିଲା ୩ଟିଙ୍କର ସହାନୁଭୂତି ଓ ସମବେଦନାର ପ୍ରଶଂସା କରିବାକୁ ମୋର ଭାଷା ନାହିଁ। ଭଗବାନ ସେମାନଙ୍କୁ ଭଲ ମଣିଷ କରି ଗଢ଼ି ତୋଳନ୍ତୁ, ଏହା ହିଁ ଈଶ୍ୱରଙ୍କ





Nrusinhanath Temple Main Gate (Singha Dwara )
Photo by sbidyadhar

# କିମ୍ବଦନ୍ତୀରେ ଶ୍ରୀ ଶ୍ରୀ ନୃସିଂହନାଥ

ଶ୍ରୀ କୁଞ୍ଜବିହାରୀ ସାହୁ

ପଶ୍ଚିମ ଓଡ଼ିଶାର ବରଗଡ଼ ଜିଲ୍ଲାର ଅଧିବାସୀଙ୍କର ଆରାଧ୍ୟ ଦେବତା ହେଲେ ମାର୍ଜାରକେଶରୀ ନୃସିଂନାଥ। ଏହି ମନ୍ଦିର ଗନ୍ଧମାର୍ଦ୍ଦନ ପର୍ବତର ପାଦଦେଶରେ ବିରାଜିତ। ରମଣୀୟ ତଥା ଆକର୍ଷଣୀୟ ପୌରାଣିକ ପୃଷ୍ଠଭୂମିରେ ଆଲୋଚିତ ଗନ୍ଧମାର୍ଦ୍ଦନ ପର୍ବତ "ଆୟୁର୍ବେଦୀୟ ବୈଦ୍ୟମାନଙ୍କର ସ୍ୱର୍ଗ" ରୂପେ ଗୃହୀତ ହୋଇପାରିଛି।

ବିଡ଼ାଳ ନୃସିଂହନାଥ ବା ମାର୍ଜାର କେଶରୀ (ଯାହାଙ୍କର କି ମୁହଁ ମାର୍ଜାର ଓ ଶରୀର ସିଂହ)ଙ୍କର କିମ୍ବଦନ୍ତୀମୂଳକ ଆଖ୍ୟାନ ସମସ୍ତଙ୍କର ଆଲୋଚ୍ୟର ବିଷୟବସ୍ତୁ ପାଲଟିଯାଇଛି।

ପବିତ୍ର ନୃସିଂହନାଥ ମନ୍ଦିରକୁ ପ୍ରଥମେ ଲାଏନ୍ ଫାଟକ (Lion Gate) ଦେଇ ଯିବାକୁ ହୁଏ। ଏଇ ଫାଟକ ଉପରେ ଗଣେଶଙ୍କର ପ୍ରତିମୂର୍ତ୍ତି ରହିଛି ଏବଂ ଗଣେଶଙ୍କ ପାଦ ନିକଟରେ ମୂଷିକ ବିଦ୍ୟମାନ। ଏହି ଫାଟକ ସନ୍ନିକଟରେ ମହାଭାରତ ଯୁଦ୍ଧରେ ବର୍ଣ୍ଣିତ ଚକ୍ରବ୍ୟୁହ ବ୍ୟବସ୍ଥାକୁ ପ୍ରତିମୂର୍ତ୍ତି ମାଧ୍ୟମରେ ଚିତ୍ରଣ କରାଯାଇଛି। ଏହାକୁ ପଦମ୍‌ପୁର ଖଇରାପାଲି ଗ୍ରାମର ଅର୍ଜୁନ ଗିଙ୍ଗିରା ନିର୍ମାଣ କରିଛନ୍ତି। ନିରେଖି ଦେଖିଲେ ପୁରାଣର ମହନୀୟ ଘଟଣାଟି ସ୍ମରଣ ହୁଏ। ତତ୍ପରେ ପଦ ପ୍ରକ୍ଷାଳନ କୁଣ୍ଡରେ ପଦଧୌତ କରି ଭିତରକୁ ଯିବାକୁ ହୋଇଥାଏ।

ଅଷ୍ଟାଦଶ ଶତାବ୍ଦୀର କନ୍ଧକବି ଯୁଗ ଦାସଙ୍କ ରଚିତ 'ନୃସିଂହ ଚରିତ'କୁ ପାଠ କଲେ ଜଣାପଡ଼େ ଯେ ଏକଦା ଗୋଦାବରୀ ନଦୀ କୂଳଠୁ ଅଳ୍ପ ଦୂରରେ ସୁବାହୁ ଜଙ୍ଗଲରେ ଆଶ୍ରମ କରି ରହୁଥିବା ଉତ୍ତୁଙ୍ଗ ଋଷିଙ୍କ କନ୍ୟା ମାଳତୀର ଅପରୂପ ସୌନ୍ଦର୍ଯ୍ୟରେ ଲଙ୍କପତି ରାବଣ ଆକର୍ଷିତ ହେଲା। ଉତ୍ତୁଙ୍ଗ ଋଷି ଓ ତାଙ୍କ ପତ୍ନୀ ଅନୁରୋଧ କଲେ ରାବଣକୁ ପୈଶାଚିକ ପ୍ରବୃତ୍ତିରୁ ନିବୃତ୍ତି ପାଇଁ। ମାତ୍ର କାମନାର ବଶବର୍ତ୍ତୀ ଲଙ୍କପତି ରାବଣ ନୃଶଂସ ଭାବେ ଅଭାବନୀୟ ପରିସ୍ଥିତିରେ ନିକଟସ୍ଥ ଝରଣାରେ ମାଳତୀକୁ ଫୋପାଡ଼ିଦେଲା। ଝରଣାରୁ କୌଶଳ କ୍ରମେ ଖସିଆସି ମାଳତୀ ଘରକୁ ବାହୁଡ଼ି ଯିବାକୁ ଉଦ୍ୟମ କଲା। ବିପର୍ଯ୍ୟସ୍ତ ଅବସ୍ଥାରେ ହଟକେଶ୍ୱର ଜଙ୍ଗଲରେ ବୁଲୁଥିବାବେଳେ ଗଣେଶଙ୍କ ବାହନ ମୂଷିକ ଦୈତ୍ୟର ସାହାଯ୍ୟ ମାଗିଲା। ମାଳତୀ ମୂଷିକ ଦୈତ୍ୟର ସାହାଯ୍ୟ-ସହଯୋଗ ପାଇବା ପରିବର୍ତ୍ତେ ଦୈତ୍ୟର ଶିକାର ହୋଇଗଲା। ଦୈତ୍ୟର ଚାରିତ୍ରିକ ସ୍ଖଳନ ଏବଂ ରାବଣର ପୈଶାଚିକ

---

ନିକଟରେ ମୋର ମାଗୁଣି। ସେମାନଙ୍କ ବାପାମା'ଙ୍କ ମଧ୍ୟ ଗଭୀର କୃତଜ୍ଞତା ଜଣାଉଛି।

ପିଲାଟି ଦିନରୁ ହୃଦୟବାନ୍ ହେବା ପାଇଁ ବାପାମା'ଙ୍କୁ ଏ ଯେଉଁ ଶିକ୍ଷା ସେମାନଙ୍କୁ ନିଶ୍ଚିତ ଭାବେ ସଫଳତାର ଶୀର୍ଷରେ ପହଞ୍ଚାଇବାରେ ସହାୟକ ହେବ --ଏହା ନିଶ୍ଚିତ।

*ପ୍ଲଟ୍ ନଂ. ୧୫୬୫/୫, ସେକ୍ଟର-୬, ସିଡିଏ, କଟକ*

ବ୍ୟବହାରରେ ମାଳତୀ ନିଜକୁ ଅତିଷ୍ଠ ମନେକଲା। ମାଳତୀ କ୍ରମେ ଗର୍ଭବତୀ ହେଲା ଏବଂ ମଣିଷ ଶରୀର ଓ ମୂଷିକ ମୁଣ୍ଡର ଦୈତ୍ୟକୁ ଜନ୍ମଦେଲା। ସେହି ମୂଷିକ-ଅସୁର ନିଜ ପରାକ୍ରମରେ ବୁଦ୍ଧିଶୂନ୍ୟ ହୋଇ ଆପଣା ମାଆଙ୍କୁ ଗିଳି ପକାଇଲା। ଶିବଙ୍କୁ ଆରାଧନା କରି ତପସ୍ୟାରେ ସିଦ୍ଧିଲାଭ କଲା। ମହାଦେବ ଆଶୀର୍ବାଦ ଦେଇ କହିଲେ, "କୌଣସି ପ୍ରକାର ତୋର ମୃତ୍ୟୁ ହେବନାହିଁ; କିନ୍ତୁ ବିଷ୍ଣୁଅଂଶୀ ଦେବତାଙ୍କ ସହ ଯୁଦ୍ଧ କଲେ ମୃତ୍ୟୁ ଅବଶ୍ୟମ୍ଭାବୀ ।"

ବରପ୍ରାପ୍ତିରେ ମୂଷିକଦୈତ୍ୟ ଧରାକୁ ସରା ମଣିଲା। ସ୍ୱର୍ଗରେ ବି ଚହଳ ପଡ଼ିଗଲା। ଦେବଗଣ ବ୍ରହ୍ମାଙ୍କୁ ଏ ବିଷୟରେ ଅବଗତ କରାଇଲେ। ବ୍ରହ୍ମା ଆଶ୍ୱାସନା ପୂର୍ବକ ମହାମାୟୀ ଦୁର୍ଗାଙ୍କ ଆଶ୍ରୟ ନେବାକୁ କହିଲେ। ମହାମାୟୀ ଦୁର୍ଗା ସମ୍ମତି ପ୍ରଦାନ କରି ମୂଷିକଦୈତ୍ୟ ସହ ଘମାଘୋଟ ଲଢ଼େଇ କଲେ। ମାତ୍ର ନିରାଶ ମନରେ ଆସନ୍ନ ବିପଦରୁ ଉଦ୍ଧାର ପାଇଁ ପ୍ରଭୁ ରାମଚନ୍ଦ୍ରଙ୍କୁ ସେ ଗୁହାରି କଲେ। ଏଥିରେ ଯଥା ସମ୍ଭବ ସହଯୋଗ କରିବେ ବୋଲି ରାମଚନ୍ଦ୍ର ପ୍ରତିଶ୍ରୁତି ଦେଲେ ଓ ନୃସିଂହ ରୂପ ଧାରଣ କଲେ।



ପ୍ରଭୁ ରାମଚନ୍ଦ୍ରଙ୍କ ସହ ମୂଷିକଦୈତ୍ୟର ସଂଗ୍ରାମ ଆରମ୍ଭ ହେଲା। ବିକଟାଳ ରଡ଼ି ଶୁଣି ମୂଷିକଦୈତ୍ୟର ପିଳେହିପାଣି। ଗୋଦାବରୀ ନଦୀରେ ମାଛ ବେଶରେ ଲୁଚି ରହିଲା ଦୈତ୍ୟ। ମାତ୍ର ବେଶି ସମୟ ନିଜକୁ ଲୁଚାଇ ନ ପାରି ବାହାରକୁ ବାହାରିଲା ପରେ ଚତୁରପଣିଆରେ ପ୍ରଭୁ ରାମଚନ୍ଦ୍ର ତା' ବେକକୁ ମାଡ଼ି ବସିଲେ; ତଥାପି ମୁକୁଳିଗଲା ଦୈତ୍ୟ। କ୍ଷିପ୍ର ଗତିରେ ପଳାୟନ କରି ପାତାଳପୁର, ସୁତାଳପୁର, ଭୂତାଳପୁର, ମହାତାଳପୁର, ରସାତଳପୁରରେ ଆତ୍ମଗୋପନ କଲା। ଦୈତ୍ୟର ମନେପଡ଼ିଲା ଶିବଙ୍କ ବରଦାନ କଥାଟି। ନୃସିଂହ ଅବତାରୀ ପ୍ରଭୁ ଶ୍ରୀରାମଚନ୍ଦ୍ର ତା' ପଛେ ପଛେ ଗୋଡ଼ାଇଲେ। ଭୟାତୁର ଅବସ୍ଥାରେ ଦୈତ୍ୟ ଗନ୍ଧମାର୍ଦ୍ଦନରେ ପ୍ରବେଶି ଗନ୍ଧମାର୍ଦ୍ଦନର ଶରଣାପନ୍ନ ହେଲା।

ଭଗବାନ ତତ୍ପରେ ଗନ୍ଧମାର୍ଦ୍ଦନ ଉପରେ କୋପ କଲେ ଏବଂ ଦୈତ୍ୟକୁ ସମର୍ପି ଦେବାକୁ ବାଧ୍ୟ କଲେ। ଶରଣାପନ୍ନକୁ ସାହାଯ୍ୟ କରିବା ବିଧିର ନିୟମ ବୋଲି ଗନ୍ଧମାର୍ଦ୍ଦନ କହିଲେ।

ଏଥିଅନ୍ତେ ପ୍ରବଳ କ୍ରୋଧରେ ଜର୍ଜରିତ ହେଲେ ନୃସିଂହରୂପୀ ଭଗବାନ। ଚହଳ ପଡ଼ିଗଲା ସମଗ୍ର ଭୂଖଣ୍ଡରେ। ବ୍ରହ୍ମାଙ୍କୁ ନିବେଦନ କଲେ ଦେବଗଣ। ସମ୍ମୁଖରେ ଦଣ୍ଡାୟମାନ ହେଲେ ସ୍ୱୟଂ ମା'ଲକ୍ଷ୍ମୀ । ଏହାପରେ ଶାନ୍ତ, ସ୍ନିଗ୍ଧ ଦିଶିଲା ଭଗବାନଙ୍କ ମୁଖମଣ୍ଡଳ। ସମସ୍ତଙ୍କୁ ଆଶ୍ୱାସନା ଦେଲେ-- ଯେହେତୁ ଗନ୍ଧମାର୍ଦ୍ଦନ ମୂଷିକ ଦୈତ୍ୟକୁ ଏକ ପାହାଡ଼ି ଖୋଲରେ ଆଶ୍ରୟ ଦେଇଛନ୍ତି, ମୁଁ ତାଙ୍କୁ ବାହାରକୁ ଆଣିପାରିବି ନାହିଁ। ମୁଁ ଏଠି ମାର୍ଜାର ରୂପରେ ଅପେକ୍ଷା କରି ରହିଲି ଏବଂ ମୂଷିକ ଦୈତ୍ୟ ବାହାରିବାକ୍ଷଣି ଶତ୍ରୁ ହିସାବରେ ବଧ କରିବି। ପ୍ରଭୁ ରାମଚନ୍ଦ୍ର ମାର୍ଜାର ରୂପରେ ଗାତ ମୁହଁରେ ଜଗି ରହିଲେ।

ସେଇଦିନଠାରୁ ନୃସିଂହନାଥ ନୃସିଂହ ରୂପରେ ପୂଜା ପାଉଛନ୍ତି ଏବଂ ମାର୍ଜାରକେଶରୀ ନାମକୁ ଭକ୍ତମାନଙ୍କୁ ଦେଖେଇ ଦେଇଛନ୍ତି।

ଅନ୍ୟ ଏକ କିମ୍ବଦନ୍ତୀ ସୂଚେଇଦିଏ ଯେ ହରିକନ୍ଧ ଓ ସହଦେବ କନ୍ଧ ଦୁଇଭାଇ ଗନ୍ଧମାର୍ଦ୍ଦନ ପାଦଦେଶରେ ବାସ କରୁଥିଲେ। ହରିକନ୍ଧର ସ୍ତ୍ରୀ ଯମୁନା ଏବଂ ସହଦେବ କନ୍ଧର ସ୍ତ୍ରୀ ରୋଦନା। ଦିନେ ଯମୁନା ବଣ ଭିତରକୁ ଯାଇ ଫଳମୂଳ ସଂଗ୍ରହ କରୁଥିବାବେଳେ କଳାଗାଡ଼ ଝରଣା ପାଖରେ ଗୋଟିଏ ବେଲଗଛକୁ ପିଟକନ୍ଦା ନାଡ଼ଟିଏ ମାଡ଼ି ରହିଥିବାର ଦେଖିଲା। ଖଣତି ସାହାଯ୍ୟରେ ପିଟକନ୍ଦା ଚେରକୁ ଖୋଳିବା ପାଇଁ ପ୍ରୟାସ କରନ୍ତେ, ସେହି କନ୍ଦାରୁ ରକ୍ତ ବାହାରିଲା। ଆଶ୍ଚର୍ଯ୍ୟ ହେଲା ଯମୁନା। ମୂର୍ଚ୍ଛା ହୋଇଗଲା ତତ୍‌କ୍ଷଣାତ୍। ଚେତା ପାଇଲା ପରେ ପ୍ରକୃତିସ୍ଥ ହେଲା। କନ୍ଦାର ମୂଳ ଏତେ ତଳକୁ ପଶିଥିଲା ଯେ ଯମୁନା ଆଗ୍ରହ ପ୍ରକାଶ କଲା ଖୋଳିବାକୁ। ହଠାତ୍ ମିଆଁଉ ମିଆଁଉ ଶବ୍ଦ ହେଲା। ଛାନିଆରେ ଝପଟିଗଲା ଯମୁନା। ସ୍ୱାମୀ ହରିଆ ଆଗରେ ଆମୂଳଚୂଳ ବଖାଣିଲା। ଦୁହେଁ ଚକିତ ତଥା ଜିଜ୍ଞାସୁ ମନରେ ଧାଇଁଗଲେ ଉକ୍ତ ସ୍ଥାନକୁ। ରକ୍ତ ବଦଳରେ କ୍ଷୀର ଝରୁଥିବାର ଦେଖିଲେ। ଏକ ନିଆରା ଶବ୍ଦ ଶ୍ରୁତିଗୋଚର ହେଲା-- "ହରିଆ, ମୁଁ ତୁମ ପ୍ରତି ପ୍ରସନ୍ନ ହୋଇଛି। ମୋତେ ନେଇ ଯାଆ ଏଠୁ। ଏକ ମନ୍ଦିର ତୋଳାଇ ପୂଜା କର।"

ୟେ୍ଁ ନିଷ୍ଟେ ଠାକୁର ବୋଲି ଭାବି ମୁଣ୍ଡିଆ ମାରିଲେ ଦୁହେଁ। ଯମୁନା ଟୋକେଇଟିଏ ଆଣିଲା। ହୁଳହୁଳିର ମଧୁର ଶବ୍ଦରେ ବାଟଘାଟ ତଥା ପରିବେଶ ମଧୁମୟ ହୋଇଗଲା। ସେଦିନ ଥିଲା ବୈଶାଖ ପୂର୍ଣ୍ଣିମୀ ତଥା ଶନିବାର। କଳା ମୁଗୁନି ପଥର ମୂର୍ତ୍ତିଟିକୁ ଧରି ଦୁହେଁ ଘରକୁ ଫେରିଲେ। ଯେହେତୁ ଦୁହେଁ ଆଦିବାସୀ ଜନଜାତି ଥିଲେ, ସେମାନେ ନାରଙ୍ଗ, କମଳା, କନ୍ଦା ଓ କନ୍ଦମୂଳ ଦେଇ ପ୍ରଭୁଙ୍କୁ ପୂଜା କଲେ। ଏଥିରେ କୌଣସି ତନ୍ତ୍ର ବା ଷୋଡ଼ଶ ଉପଚାର ନ ଥିଲା। କେବଳ ଥିଲା ଅହେତୁକ ଭକ୍ତି। କନ୍ଧକବି ଯୁଗ ଦାସ ଲେଖିଛନ୍ତି--

ପିଟାକନ୍ଦା ଖାଅ ବୋଲି ବୋଇଲା ଶବର
ବାସନା ଘେନିଲେ ପ୍ରଭୁ ବ୍ରହ୍ମାଣ୍ଡ ଠାକୁର ।

x x x

ଶୁଣିକରି ନାରାୟଣ ଅଳପ ହସିଲେ
ବର ମାଗି ଘେନ ବୋଲି ଶ୍ରୀମୁଖେ ବୋଇଲେ ।

ଯମୁନା ସନ୍ତୁଷ୍ଟ ମନରେ ବର ମାଗିଲା, "ହେ ପ୍ରଭୁ ନୃସିଂହନାଥ, ମୋର ଖଣତି ଚିହ୍ନ ତୁମ ଶିରରେ ଝଟକୁଥିବ। ମୋତେ ଦର୍ଶନ କରି ସମସ୍ତେ ପୁଣ୍ୟ ହୋଇଯିବେ।" ଏହି ବର ମୋତେ ଦିଅନ୍ତୁ। ବିଶ୍ୱାସ ଅଛି ଯେ ଗ୍ରହଣ ଦିନ ଯମୁନା ଶବରୁଣୀ-ନୃସିଂହନାଥଙ୍କୁ ଦର୍ଶନ କରେ ଏବଂ ତାଙ୍କୁ ସ୍ମରଣ କଲେ ଚେରମୂଳି, ଔଷଧ ରୋଗ ବାଧକ ରୂପେ କାମ କରିଥାଏ।

ପାଟଣା ମହାରାଜା ବୈଜଲଦେବଙ୍କ ଆଦେଶରେ ଏହି ନୃସିଂହନାଥ ମନ୍ଦିର ତୋଳା- ହୋଇଥିଲା। ଏହି କିମ୍ବଦନ୍ତୀର କଥାବସ୍ତୁ ଗୀତିକା ମାଧ୍ୟମରେ 'ଭୋଗ-ମଣ୍ଡପ' ସନ୍ନିକଟ କାନ୍ଥରେ ଚିତ୍ରିତ ହୋଇ ଲିପିବଦ୍ଧ ହୋଇଛି।

ବର୍ତ୍ତମାନ ନୃସିଂହନାଥଙ୍କ ଦୁଇଟି ପ୍ରତିମା ପୂଜା ପାଇ ଆସୁଛି। ବୈଶାଖ ଚତୁର୍ଦ୍ଦଶୀରେ ଏଠି ମେଳା ହୁଏ। ବୈଶାଖୀ ମେଳା ନାମରେ ପରିଚିତ ଏହି ମେଳାରେ ଶହଶହ ଭକ୍ତ ଆସି ନିଜର ମନସ୍କାମନା ପୂର୍ଣ୍ଣ କରିଥାନ୍ତି।

*ଏଲ.ଆଇ.ଜି- ୧୫, ନୟାପଲ୍ଲୀ ବ୍ରିଟ୍ କଲୋନୀ, ଭୁବନେଶ୍ୱର-୭୫୧୦୧୨*

**

# କାକରା ଅପା

ଶ୍ରୀ ସନ୍ତୋଷ କୁମାର ପଣ୍ଡା

ମଥା ପରେ ତାଙ୍କ ଝରି ପଡ଼ିଥିଲା
ଜଗାକାଳିଆର କରୁଣା,
ମନ-ତାକତକୁ ଗଣ୍ଠିଧନ କରି
କଟକ ଆସିଲେ ଅରୁଣା ।
ଦୁଃଖ-ରାବଣର ହୁଙ୍କାର, ଝଙ୍କାର
ତାଙ୍କ ପାଖେ ଗଲା ନୀରବି,
ଅନ୍ଧାରି ଗଳିରେ ଚାଳ ଘରଟିଏ
ପାଲଟିଲା ତାଙ୍କ ପୃଥିବୀ ।
ସେଇ ନୁଆଁଣିଆ ଘରଟି ଭିତରେ
ଇତିହାସ ହେଲା ରଚନା,
ମରମ ତାହାର 'ମୁହାଁମୁହିଁ ହୁଅ
କଷଣ-ଦାଉକୁ ଡରନା ।'
ପିଲାଟି ବେଳରେ ବୋଉ ପାଖେ ବସି
ଗଢ଼ି ଶିଖିଥିଲେ କାକରା,
ସେଇ ପିଠା ହେଲା ଅନ୍ଧର ଲଉଡ଼ି
ଖୋଲିଦେଇ ପ୍ରାଣ-ପସରା ।
ଗୁଜୁରାତି, ଖସା ଲବଙ୍ଗ, ମଧୁରୀ
ଅଦା ଦେଇ ଆମ୍ବକଷିଆ,
ହାତ ମୋଡ଼ି ମୋଡ଼ି ବୋଉ ଗଢୁଥିଲା
ପିଠା କେତେ ରସରସିଆ ।
ମୁଗ, ସୁଜି ଆଉ ଅଟା, ମଇଦାରେ
ନରମ ପାଗରେ ଶୋଧୁଅ
ସାଦା ପୁରଦିଆ ପିଠା ଗଢୁଥିଲା
ଅଶିଣ ହେଉ କି ଭୋଦୁଅ ।
ଗୋଲା, ଚାନ୍ଦମୁହାଁ, ଚଟକା, ପେଟୁଆ
ବାଉଁଶ ଡାଲାରେ କାକରା,
ଯାହା ଖାଇଥାଅ ଆହୁରି ଖାଇବ
ପାଟିରେ ଫୁଟାଇ ଟାକରା ।
ବାର ବର୍ଷ ତଳେ ଚାଳ ଘରଟିରେ
କାନିରେ ଗଣ୍ଠି ସେ ପକାଇ,
କିଂଦିନ କିଂରାତି କାକରା ଛାଣିଲେ
ଚୁଲିରେ କଡ଼େଇ ବସାଇ ।
ରକତ-କର୍କଟ ନେଇଥିଲା ତାଙ୍କ
ଶଙ୍ଖା, ସିନ୍ଦୂରକୁ ଛଡ଼େଇ,
ପାରିଲାନି କିନ୍ତୁ ଆଖି କୋରଡ଼ରୁ
ଲୁହ ଦୁଇଟୋପା ଗଡ଼େଇ ।
ମଝି ରାସ୍ତାଟାରେ ହାତ ଛାଡ଼ିଦେଇ
ଚାଲିଗଲେ ବାସୁ ଭାଇନା,
ନୀଳକଣ୍ଠ ଭଳି ପିଇଲେ ଅରୁଣା
ଦୁଃଖ-ହଳାହଳ ଯାତନା ।
କାହାରି ଉପରେ ବୋଝ ସେ ହେବେନି
ଚାହିଁବେନି ହାତ-ଟେକାକୁ,
ପିଲାଙ୍କୁ ଧରି ସେ କଟକ ଆସିଲେ
ଗଲେ ନାହିଁ ବାପ ଘରକୁ ।
ବିଡ଼ାନାସୀ ଛକ ଗଳି-ଅର୍ଗଳିରେ
ବଣନିଆଁ ପରି ଖେଳିଲା,
କାକରା ଅପାଙ୍କ ହାତର କିମିଆ
ପିଲା, ବୁଢ଼ା ମନ ମୋହିଲା ।
ଗରାଖ ଗହଳି ଭାଙ୍ଗିବା ପାଇଁକି
ଅପା ଧାଇଁଥିବେ ଚଞ୍ଚଳ,
ସଠିକ ଜାଗାରେ ଲାଗିବା ଆଶାରେ
ଧାଇଁଛି କି କରମଣ୍ଡଳ ?

ବାସୁଭାଇଙ୍କର ପୂର୍ଣ୍ଣ ଅବୟବ
ଫଟୋଟେ କାନ୍ଥରେ ଝୁଲଇ,
ପୂଜା ହେଲା ପରେ କାକରା ଅପାଙ୍କ
ସକାଳ ପାଖୁଡ଼ା ମେଲଇ ।
ମାସକୁ ଦି'ଥର ସକାଳ ଗାଡ଼ିରେ
ଅରୁଣା ଯାଆନ୍ତି ଘରକୁ,
ଶାଶୂ, ଶଶୁରଙ୍କ ଥଇଥାନ ସାରି
ଫେରନ୍ତି ବେଉସା ଥଳକୁ ।
କେତେ ପାଣି ବହି- ଗଲାଣି ସେଦିନୁ
ଗଙ୍ଗାର ବିପୁଳ ଅଙ୍ଗରେ,
କାକରା ଅପାଙ୍କ ଦୋକାନ ହେଲାଣି
ଝଲସା ରୂପର ରଙ୍ଗରେ ।
ଦି'ମହଲା କୋଠା ମୁଣ୍ଡ ଟେକିଲାଣି
ନାହିଁ ଆଉ ଚାଳ ଛପର,
ମୁଗୁନି ପଥର ମେଜ ପଡ଼ିଲାଣି
ମାର୍ବଲ ଚଟାଣ ଉପର ।
ଶିଶୁ ମନ୍ଦିରରେ ଗୁରୁମା ହେଲାଣି
ତାଙ୍କ ବଡ଼ ଝିଅ ସୋନାଲି,
ବୋର୍ଡ ପରୀକ୍ଷାରେ ଏଥର ବସିବ
କୋଡ଼ପୋଛା ଗେହ୍ଲା ମୋନାଲି ।

ସମ୍ବେଦନଶୀଳ ମନଟେ ପାଇଲେ
ଦୂର ଦିଗନ୍ତକୁ ଅନେଇ,
ପିଛିଲା ଦିନର ପରଦା ଉଠିଲେ
ଆଖି ଆସେ ତା'ଙ୍କ ଜକେଇ ।

ଡାଆଣିଆ ଖରା ଝରି ପଡ଼ିଥିଲା
ସାରା ବିଡ଼ାନାସୀ ଅଞ୍ଚଳେ,
ଜଳଖିଆ ପାଇଁ ପ୍ରବେଶି ଥିଲି ମୁଁ
ଅପାଙ୍କ କୋଠାରେ ଚଞ୍ଚଳେ ।

ଫୁଲଝରି ପରି ତେଲ କଡ଼େଇରେ
ଘେରା କାଟୁଥିଲେ କାକରା,
ଅପା ଖୋଲୁଥିଲେ ଭାନୁମତୀ ପେଡ଼ି
ପିଛିଲା ଦିନର ପସରା ।

"ଯାହା ତ ହେବାର ହୋଇ ସାରିଲାଣି
କିଛି ଲାଭ ନାହିଁ ଭାବିକି,
ସବୁ ହାନି ଲାଭ ଟେକି ଦେଇଛି ମୁଁ
ସେଇ ନୀଳାଚଳବାସୀଙ୍କି ।

ପେଟେ ଖାଇସାରି ବାହାରିଲି ଯେବେ
କାକରା ଅପାଙ୍କ କୋଠାରୁ,
ଯେତେ ଯାଚିଲେ ବି ପଇସା ନେଲେନି
ହାତ ଫେରାଇଲେ ମୋ'ଠାରୁ ।

ଧୀରେ ପଦଚାଳି ଫେରି ଆସୁଥିଲି
କାକରା ଅପାଙ୍କ ପାଶରୁ,
ଛିଣ୍ଡାଇ ପାରିବି କେବେ କିବା ମୁହିଁ
ତାଙ୍କୁ ମୁଁ ମନର ଫାଶରୁ ?

*ବାଲିକୁଦା କଲେଜ, ଜଗତସିଂହପୁର- ୭୫୪୧୦୮*

**

# ଇବୋଲା ଆତଙ୍କ

ଶ୍ରୀ କାଞ୍ଚିନାରାୟଣ ମହାନ୍ତି

ଇବୋଲା ପ୍ରଥମେ ୧୯୭୬ ମସିହାରେ କଙ୍ଗୋରେ ଆବିଷ୍କାର କରାଯାଇଥିଲା । ସେଠାରୁ ଆଫ୍ରିକାର ସୁଦାନ, ଉଗାଣ୍ଡା ପ୍ରଭୃତି ଅଞ୍ଚଳକୁ ବ୍ୟାପିଥିଲା । କ୍ରମେ ଏହା ଜନି ଦ୍ୱୀପପୁଞ୍ଜକୁ ବ୍ୟାପିଲା । ଗ୍ରାମାଞ୍ଚଳରେ ସ୍ୱାସ୍ଥ୍ୟ ସଚେତନତା ଅଭାବରୁ ଏହା ସଂକ୍ରମିତ ହେବାରେ ଲାଗିଛି । ଅଗଷ୍ଟ ପ୍ରଥମ ସପ୍ତାହ ସୁଦ୍ଧା ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନର ତଥ୍ୟ ଅନୁଯାୟୀ ୧୪୨୭ ଜଣଙ୍କ ଠାରୁ ଅଧିକ ଲୋକଙ୍କର ଏହି ରୋଗରେ ମୃତ୍ୟୁ ହୋଇସାରିଲାଣି । ୨୭୧୫ଜଣ ଏହି ରୋଗରେ ଆକ୍ରାନ୍ତ ହୋଇଛନ୍ତି ।

ପାଞ୍ଚପ୍ରକାରର ଇବୋଲା ଭୂତାଣୁ ଅଛନ୍ତି । ଇଭିଡି ଇବୋଲା ଭାଇରସ୍ ରୋଗକୁ ରକ୍ତକ୍ଷରଣ ରୋଗ ବୋଲି କୁହାଯାଉଥିଲା । ଏହା ଫାଇଲୋ ଭାଇରିଡେଟ୍ ଗ୍ରୁପ୍ର ଭାଇରସ୍ ପ୍ରଜାତିରୁ ଏକ ଭାଇରସ୍ । ଏହା ପଶୁପକ୍ଷୀମାନଙ୍କଠାରୁ ମଣିଷ ଦେହକୁ ସଂକ୍ରମିତ ହୋଇଥାଏ ।

ପଶୁପକ୍ଷୀମାନଙ୍କ ସହ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିବା କିମ୍ବା ସେମାନଙ୍କର ମଳ, ମୂତ୍ର, ରକ୍ତ, ଲାଳ, ମାଂସ ଇତ୍ୟାଦି ଲାଗିବା ଦ୍ୱାରା ଏହା ସଂକ୍ରମିତ ହୋଇଥାଏ । ବାଦୁଡ଼ି, ମୃଗ, ସିମ୍ପାଜି ଇତ୍ୟାଦିଙ୍କଠାରୁ ଏହା ବ୍ୟାପିଥାଏ । କୁକୁର, କୁକୁଡ଼ା, ଗାଇ, ଛେଳି ଇତ୍ୟାଦିଙ୍କଠାରୁ ଏହା ବ୍ୟାପିବା ଜଣାଯାଇନାହିଁ ।

ପଶୁପକ୍ଷୀମାନଙ୍କ ସଂସ୍ପର୍ଶରେ ଆସୁଥିବା ଚିକିତ୍ସକ ତଥା ତତ୍ତ୍ୱାବଧାରକମାନଙ୍କ ପାଇଁ ସତର୍କତା କଡ଼ାକଡ଼ି କରାଯାଇଛି । ପଶୁ ମାଂସ ବ୍ୟବସାୟୀ ବା ତଦ୍ଜନିତ କାରବାରରେ ଜଡ଼ିତ ବ୍ୟକ୍ତିମାନଙ୍କୁ ସଜାଗ ରହିବା ପାଇଁ କୁହାଯାଇଛି ।

ଯେଉଁଠାରେ ଏହି ରୋଗୀମାନେ ଚିକିତ୍ସିତ ହେଉଛନ୍ତି, ସେମାନଙ୍କର ସେବିକା ତଥା ହାସପାତାଳର କର୍ମଚାରୀମାନେ ମଧ୍ୟ ସତର୍କ ନ ରହିଲେ ଏ ରୋଗ ଶୀଘ୍ର ବ୍ୟାପିଯାଏ ।

ଏଡସ୍, ହେପାଟାଇଟିସ୍, କ୍ୟାନସର ପରେ ଏହା ମାନବ ସମାଜ ପାଇଁ ମହାଆତଙ୍କ ସୃଷ୍ଟି କରିଛି । ବଡ଼ କଥା ହେଲା, ଏହାର ପ୍ରତିଷେଧକ ବା ଦମନ ପାଇଁ ଏ ଯାବତ୍ ଔଷଧ ଉପଲବ୍ଧ ହୋଇନାହିଁ । ଡାଇବେଟିସ୍, ଯକ୍ଷ୍ମା, ଏଡସ୍, କ୍ୟାନସର ରୋଗୀମାନଙ୍କର ପ୍ରତିଷେଧକ ଶକ୍ତି କମ୍ ଥିବାରୁ ଏହା ଶୀଘ୍ର ସଂକ୍ରମିତ ହୋଇଥାଏ ।

**ଏହାର ଲକ୍ଷଣ :**

ଏହି ଭୂତାଣୁ ସହ ସମ୍ପର୍କରେ ଆସିବାର ଏକ ସପ୍ତାହ ମଧ୍ୟରେ ଏହି ରୋଗର ଲକ୍ଷଣ ଜଣାପଡ଼ିଯାଏ ।

ପ୍ରଥମରେ ଦେହରେ କିଛି ଫଳିଗଲା ପରି ଲାଲ୍‌ଲାଲ୍ ଦାଗ ଦେଖାଯାଏ । ଜ୍ୱର, ମୁଣ୍ଡବିନ୍ଧା ସହିତ ରୋଗୀର ବାନ୍ତି ମଧ୍ୟ ହୁଏ । ପେଟ ଦରଜ ହୁଏ, ପିଠି



ଓ ଗଣ୍ଠିରେ ଯନ୍ତ୍ରଣା ହୁଏ। ପତଳା ଝାଡ଼ା ସାଙ୍ଗକୁ ତଣ୍ଟି ଶୁଖିଗଲା ପରି ଲାଗେ। ଦରଜ ମଧ୍ୟ ହୁଏ। ଚର୍ମରେ ଦାଗ ପଡ଼େ ଓ ଦରଜ ଲାଗେ। ଯୌନାଙ୍ଗ ବି ଦରଜ ହୁଏ ଓ ଫୁଲିବା ଦେଖାଯାଏ । ଆଖି ଧରିବା ପରି ଲାଲ ଦେଖାଯାଏ । ନାକ, କାନ ଓ ପାଟିରୁ ରକ୍ତ କ୍ଷରଣ ହୁଏ।

**ରୋଗୀକୁ ଚିହ୍ନିବା ଓ ନିଶ୍ଚିନ୍ତ ହେବା**

ଉପରୋକ୍ତ କାରଣରୁ ଇବୋଲା ହୋଇପାରେ ବୋଲି ଜାଣିଲା ବେଳକୁ ଆଉ ରୋଗୀର ଉପଶମ ପାଇଁ ସମୟ ନ ଥାଏ।

ପ୍ରଥମେ ଭୂତାଣୁ ଆଣ୍ଟିଜେନ୍ ପରୀକ୍ଷା, କମ୍ପ୍ଲିଟ ବ୍ଲଡ୍ କାଉଣ୍ଟ୍, ଏ ଟେଷ୍ଟ , ଏଲ୍.ଏଫ୍.ଟି (ଲିଭର ଫଙ୍କସନ୍ ଟେଷ୍ଟ୍) କରାଯାଏ ।

ଚିକିତ୍ସା ପାଇଁ ଏ ପର୍ଯ୍ୟନ୍ତ କୌଣସି ନିଦାନ ଉପଲବ୍ଧ ନୁହେଁ। ହୁଏତ ଚିକିତ୍ସାବିଦ୍‌ମାନେ ଗବେଷଣାରେ ବ୍ୟସ୍ତ ଥିବେ ଏହାର କୌଣସି ପ୍ରତିକାର ବାହାର କରିବା ପାଇଁ। ଏବେ କେବଳ ଜ୍ୱର, ଜଳଶୂନ୍ୟତା ପାଇଁ ଯାହା ପ୍ରତିଷେଧକ ବ୍ୟବସ୍ଥା କରାଯାଇ ସଂକ୍ରମଣ ରୋକିବା ପାଇଁ ଆଇ.ସି.ୟୁ.ରେ ରଖାଯାଉଛି।

ଥରେ ଏହି ରୋଗ ଆରମ୍ଭ ହେଲେ ଏହି ଭୂତାଣୁର ସଂକ୍ରମଣରେ ୮୦ରୁ ୧୦୦ ଜଣ ଲୋକ ମୃତ୍ୟୁର ଶିକାର ହେଉଛନ୍ତି।

ଯଦିଓ ଆମ ଭାରତକୁ ଏ ରୋଗ ପ୍ରବେଶ କରିନାହିଁ, କିନ୍ତୁ ବିଦେଶରେ ରହୁଥିବା ପ୍ରାୟ ୩ଲକ୍ଷ ଭାରତୀୟ କେବେ କେଉଁଠି ସଂକ୍ରମଣର ଶିକାର ହେଲେ, ତାହା ଭାରତରେ ମାରାତ୍ମକ ରୂପ ଧାରଣ କରି ବସିବ।

ସରକାରଙ୍କ ନିୟମ ଅନୁସାରେ କୌଣସି ବିଦେଶୀ ନାଗରିକର ସ୍ୱାସ୍ଥ୍ୟ ପରୀକ୍ଷା କରି ରୋଗମୁକ୍ତ ଥିଲେ ବିଦେଶ ଯାତ୍ରା ପାଇଁ ଅନୁମତି ପାଇବା କଥା ଏବଂ ସେହି ବିଦେଶୀଙ୍କର ସ୍ୱାସ୍ଥ୍ୟ ସଂକ୍ରାନ୍ତୀୟ ରିପୋର୍ଟ ମାସେ ପର୍ଯ୍ୟନ୍ତ ସରକାରଙ୍କ ନଜରରେ ରହିବା ଜରୁରୀ।

ଅଠେଇଶ ଅଗଷ୍ଟରେ ଭାରତକୁ ୮୮ଜଣ ଭାରତୀୟ ବିଦେଶରୁ ଫେରିଛନ୍ତି। ସେମାନେ ଭାରତର ବିଭିନ୍ନ ରାଜ୍ୟର ଲୋକ ହେଲେ ମଧ୍ୟ ଆମ ଓଡ଼ିଶାକୁ ତିନିଜଣ ଆସିଛନ୍ତି। ସେମାନଙ୍କୁ କେବଳ ବିମାନ ବନ୍ଦରରେ ପରୀକ୍ଷା ନିରୀକ୍ଷା କରି ଛାଡ଼ିଦେଲେ ତାହା କର୍ମ ସମ୍ପାଦନ ହେଲା ପରି ବୋଧ ହେଲା। ସେହି ଅଠାଅଣୀ ଜଣ ବିଦେଶୀଫେରନ୍ତା ବ୍ୟକ୍ତିମାନଙ୍କର ସ୍ୱାସ୍ଥ୍ୟଗତ ଅଧିକ ଏକ ମାସ ଅବଧି ଅନୁଧ୍ୟାନ କରା ନଗଲେ ହୁଏତ ଜଣଙ୍କ ଭିତରେ ଥିବା ସୁପ୍ତ ଭୂତାଣୁ ପର ସପ୍ତାହରେ ହଜାର ହଜାର ସଂଖ୍ୟାରେ ବ୍ୟାପିଯିବାର ଯଥେଷ୍ଟ ସମ୍ଭାବନା ଥାଏ।

ସଚେତନତାର ବାର୍ତ୍ତା ପଲ୍ଲୀଠାରୁ ସହର ପର୍ଯ୍ୟନ୍ତ ଘରେ ଘରେ ପହଞ୍ଚିବା ଜରୁରୀ। ଆଲୋଚିତ ଇବୋଲା ଭୂତାଣୁର ସାମନ୍ୟ ଲକ୍ଷଣ ଅନୁଭବ କଲେ, ରକ୍ତ ପରୀକ୍ଷା ସହିତ ଅନ୍ୟାନ୍ୟ ଡାକ୍ତରୀ ସହାୟତା ନେବା ଉଚିତ।

ମନୁଷ୍ୟ ମଧ୍ୟରେ ରାକ୍ଷସ ଓ ଦେବତାର ଖେଳ ଚାଲିଛି। ଏହାକୁ ତାଣ୍ଡବଲୀଳା କୁହାଯିବା ଉଚିତ। ଶିବ ତାଣ୍ଡବ ନୃତ୍ୟ ଆରମ୍ଭ କଲେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନିପୁର ଦୋହଲି ଯାଉଥିଲା। ସମସ୍ତେ ଅସ୍ତବ୍ୟସ୍ତ ହୋଇ ତ୍ରାହି ତ୍ରାହି ଡାକୁଥିଲେ। ତାଙ୍କୁ ଶାନ୍ତ କରାଯାଉଥିଲା।

ମଝିରେ ମଝିରେ ଏହିଭଳି ବିଚିତ୍ର ମହାମାରୀର ଆତଙ୍କରେ ପୃଥିବୀବାସୀ ଭୟଭୀତ। ଯଦି ପୂର୍ବରୁ

ପଶୁମାନଙ୍କଠାରେ ଇବୋଲା ଭାଇରସ୍ ଥିଲା, ତେବେ ତାହା ଆଗରୁ କାହିଁକି ମଣିଷ ଦେହକୁ ଆସି ନ ଥିଲା?

ଏସବୁ ଗବେଷଣାସାପେକ୍ଷ। ତେବେ ବିଶ୍ୱକୁ ଏହି ଉତ୍କଟ ମହାମାରୀରୁ ରକ୍ଷା କରିବା ପାଇଁ କିଛି ଲୋକ ଭଗବାନଙ୍କୁ ପ୍ରାର୍ଥନା କରୁଥିବାବେଳେ ବିବେକହୀନ କିଛି ସଂଗଠନ ଡାର୍ଟି ବମ୍ ତିଆରି କରିବା କଥା ମସୁଧା କରିଛନ୍ତି।

ଏହି ବମ୍‌କୁ ପୁଣି ଇଂଲଣ୍ଡ ସହର ଉପରେ ବିସ୍ଫୋରିତ କରାଯିବ। 'ଧରିତ୍ରୀ'ର ପୃଷ୍ଠା ଷୋହଳ ଅଗଷ୍ଟ ପାଞ୍ଚ ତାରିଖରେ ପ୍ରକାଶିତ ତଥ୍ୟ ଅନୁସାରେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଜୈବ ନୃତତ୍ତ୍ୱବିତ୍ ଡ. ପିଟର ଓ୍ୱାଲସ୍ 'ଦି ସନ୍' ପତ୍ରିକାରେ ଦେଇଥିବା ସୂଚନାରୁ ଜଣାଯାଏ ଯେ ଏହା ସନ୍ତ୍ରାସବାଦୀମାନଙ୍କର ମାରାତ୍ମକ ପଦକ୍ଷେପ। ଇବୋଲା ଭାଇରସ୍‌କୁ ବ୍ୟବହାର କରି ପାଉଡର ପ୍ରସ୍ତୁତ କରିବା ପରେ ତାହାକୁ ଜନବହୁଳ ଅଞ୍ଚଳରେ ବିସ୍ଫୋରଣ କରାଯିବ। ଯଦି ଏପରି କରାଯାଏ, ପୋକମାଛି ପରି ମନୁଷ୍ୟ ରୋଗରେ ସଢ଼ି ମରିବେ।

ତାଙ୍କ ମତରେ, ବିଶ୍ୱର ମାତ୍ର ହାତଗଣତି କେତୋଟି ଗବେଷଣାଗାରରେ ଏହି ଭାଇରସ୍‌କୁ ସୁରକ୍ଷିତ ଭାବେ ରଖାଯାଇ ଗବେଷଣା ଚାଲୁ ରହିଛି। ତେବେ ସେଥିରୁ କିଛି ମଧ୍ୟ ଆତଙ୍କବାଦୀମାନଙ୍କ ହାତରେ ପଡ଼ିବା ଅସମ୍ଭବ ନୁହେଁ। ଚାହିଁଲେ ସେମାନେ ପଶ୍ଚିମ ଆଫ୍ରିକାରୁ ମଧ୍ୟ ଏହି ଭାଇରସ୍ ସଂଗ୍ରହ କରିପାରିବେ। ଯଦି ସେମାନେ ଏହି ଦୁର୍ବୁଦ୍ଧି କରନ୍ତି, ପୃଥିବୀ ପାଇଁ ବିନାଶର କେତେ ବଡ଼ ବିପତ୍ତି ଆସୁଛି, ତାହା ଚିନ୍ତା କରିବାର କଥା।

*ଆଶ୍ରମ, ଶ୍ରୀବିହାର କେଲୋନି- ୭୫୩୦୦୮* ✲✲

# ମଣିଷ କେବେ ପଶୁ ନୁହେଁ

ଡକ୍ଟର ତ୍ରିନାଥ ପଟ୍ଟନାୟକ

ଚ୍ୟାଉପେଙ୍କ ନାମରେ ଜଣେ ଲୋକ ଗୋଟିଏ ଗାଁ'ରେ ଥାଏ। ସେ ଜଣେ ଶିକାରୀ। ଶିକାର ଖୋଜିବା ପାଇଁ ଜଙ୍ଗଲକୁ ଯାଇଥାଏ। ଜଙ୍ଗଲ ସାରା ବୁଲି ବୁଲି ଥକିଗଲା। କୌଣସି ଶିକାରର ସଂଧାନ ପାଇଲା ନାହିଁ। ଖରା ମାଡ଼ି ଆସିଲା। କିଛି ହେଲେ ଖାଇନାହିଁ। ଗୋଟିଏ ଗଛ ଛାଇରେ ଶୋଇପଡ଼ିଲା।

ସଞ୍ଜ ବେଳକୁ ତାର ନିଦ ଭାଙ୍ଗିଲା। ଏ କ'ଣ ? ତା' ଦେହକୁ ଦେଖି ଚମକି ପଡ଼ିଲା। ଚାରିଟି ଗୋଡ଼, ଗୋଟିଏ ଲାଂଜ, ତା' ଦେହକୁ କୁଆଡୁ ଆସିଲା ? ଆରେ ଏ ତ ବିଚିତ୍ର କଥା ! ସେ କ'ଣ ସତରେ ବାଘ ପାଲଟି ଯାଇଛି ନା ? ବୋଧହୁଏ ଏ ଗଛର କିଛି ବିଶେଷତ୍ୱ ଅଛି। ସେ ନିଜକୁ ବାରମ୍ବାର ଚାହିଁଲା। ତା ପରେ ବହୁତ ଖୁସି ହୋଇଗଲା।

ଛପି ଛପି ଗାଁ ଆଡ଼କୁ ଆସିଲା। ସେ କଥା କହିବାକୁ ଯେତେ ଚେଷ୍ଟା କରୁଥାଏ, କହି ପାରୁ ନ ଥାଏ। ଏ କ'ଣ, ଚିହ୍ନାପରିଚିତ ଲୋକଗୁଡ଼ାକ ତାକୁ ଦେଖି ପଳାଇଯାଉଛନ୍ତି। ଲୁଚି ଯାଉଛନ୍ତି। ହାଉଳି ଖାଉଛନ୍ତି।

ଚ୍ୟାଉପେଙ୍କୁ ବହୁତ ମଜା ଲାଗିଲା।

ଦିନସାରା ସେ କିଛି ଖାଇନାହିଁ। ଭୋକରେ ପେଟ ଜଳୁଛି। ଖାଇବା ଆଶା ନେଇ ନିଜ ଘର ପାଖକୁ ଗଲା। ତାକୁ ଦେଖି ଘରଲୋକମାନେ କବାଟ ବନ୍ଦ କରିଦେଲେ। ବାଘଟି ଘର ଭିତରକୁ ଆସୁଛି କହି ଚେକା ଛାଡ଼ିଲେ।



ସେ ବାଟରେ ଆସୁ ଆସୁ ତାଙ୍କ ଗାଁର ଲୋକ ଚେଙ୍ଗଚିଉକୁ ଭେଟିଲା । ରାତି ଅନ୍ଧାରରେ ଚେଙ୍ଗ୍ ଘର ଆଡ଼କୁ ଧପାଲୁଥାଏ । ଚ୍ୟାଉ ତ ଭୋକରେ ଅନ୍ଧ ଭଳି ହୋଇ ଯାଇଥାଏ । ସହଜେ ବାଘ ରୂପ ଧରିଛି । ତା' ମନକୁ ବା କାହୁଁ ଦୟା ଆସିବ ? ସେ ଚେଙ୍ଗଚିଉକୁ ମାରି ପକାଇଲା । ପୁଳାଏ ମାଂସ ଖାଇ, ବଣ ଭିତରେ ଆଉ ଗୋଟିଏ ଗଛ ମୂଳେ ଆରାମରେ ଶୋଇଗଲା । ପେଟର ଭୋକ ମରିବା ପରେ ମୁଣ୍ଡରେ ବୁଦ୍ଧି ଆସିଲା । ନିଜ କର୍ମ ପାଇଁ ଅନୁତାପ କଲା । ନିଜର ଭୁଲ୍ ବୁଝିପାରିଲେ ସୁଦ୍ଧା ଆଉ ଉପାୟ ବା କ'ଣ ଅଛି ?

ଚ୍ୟାଉପେଙ୍ଗ ସକାଳୁ ଉଠି ଦେଖେ ଯେ ସେ ପୁଣି ମଣିଷ ପାଲଟି ଯାଇଛି । ସେ ଅନୁଭବ କଲା ଜଙ୍ଗଲରେ ଥିବା ଗଛ ଦୁଇଟିର ବିଶେଷତ୍ୱ ଅଛି ।

ଗୋଟିଏ ଗଛ ମଣିଷକୁ ବାଘ କରିଦିଏ ତ ଅନ୍ୟ ଗଛଟି ବାଘକୁ ମଣିଷ କରିଦିଏ । ମଣିଷ ସିନା ଗଛଲତାର ମୂଲ୍ୟ ବୁଝି ନ ପାରି ଅଯଥା ଗଛ ଓ ଜଙ୍ଗଲ କାଟି ପକାଉଛି । ଗଛ ପାଖରେ ବହୁତ ଭଲଗୁଣ ଅଛି । ସେଥିପାଇଁ କୁହାଯାଇଛି ଗଛ ମଣିଷର ବନ୍ଧୁ ।

ଚ୍ୟାଉପେଙ୍ଗ ଘରକୁ ଫେରି ଚୁପ୍‌ଚାପ୍ କେତେଦିନ ରହିଲା । ସେ ଦିନେ ଗାଁ ମୁଣ୍ଡରେ ଚଉତରାରେ ଗାଁ'ର ଅନ୍ୟାନ୍ୟ ସାଙ୍ଗସାଥୀ ମେଳରେ ବସିଥାଏ । ସେ କେମିତି ହଠାତ୍ ବାଘ ପାଲଟିଗଲା, କେମିତି ହଟହଟା ହେଲା- ସବୁ କଥା ବର୍ଣ୍ଣନା କଲା । କହୁ କହୁ ମଣିଷ ମାରିବା କଥା ବି କହିଦେଲା ।

ଚେଙ୍ଗଚିଉର ଭେଣ୍ଡିଆ ପୁଅ ମଧ୍ୟ ସେଠି ବସିଥିଲା । ସବୁ କଥା ଶୁଣିଲା । ତା' ବାପାର ଅସଲ ମୃତ୍ୟୁ ସଂଧାନ ଯେମିତି ପାଇଛି ଆଉ କି ସଂଭାଳେ । ଦଉଡ଼ିଆସି ଚ୍ୟାଉପେଙ୍ଗ ବେକକୁ ମାଡ଼ି ବସିଲା ।

ପାଖରେ ବସିଥିବା ଲୋକମାନେ ଚେଙ୍ଗଚିଉ ପୁଅକୁ ଧରିନେଲେ । ସେଠି ଗାଁ'ର ମୁଖିଆ ଆସି ପହଞ୍ଚିଲେ । ସେ କହିଲେ, ''ଆରେ ପୁଅ, ତୁ ନିଜେ ବିଚାର କର । ତୋ ବାପା ହତ୍ୟାକାରୀ ଗୋଟିଏ ଭୋକିଲା ବାଘ, ମଣିଷ ଚ୍ୟାଉପେଙ୍ଗ ନୁହେଁ । ସେତେବେଳେ ସେ ମଣିଷ ନ ଥିଲା, ଗୋଟିଏ ପଶୁ । ପଶୁ ପାଇଁ ପଶୁ ହେବାକୁ ପଡ଼ିବ । ତୁ ଯେଉଁ ନ୍ୟାୟ ଧରିଛୁ, ତାହା ମନୁଷ୍ୟ ପାଇଁ ପ୍ରଯୁଜ୍ୟ ନୁହେଁ । ମନୁଷ୍ୟ ପାଇଁ ନୀତିନିୟମ ଅଛି, ପଶୁ ପାଇଁ ନାହିଁ । ତୁ ଯଦି ତୋ କଥାରେ ଦୃଢ଼ ରହୁ, ତେବେ ତୋର ମଧ୍ୟ ମନୁଷ୍ୟ ସମାଜ ଭିତରେ ରହିବା ପାଇଁ ଅଧିକାର ରହିବ ନାହିଁ ।''

ଯୁବକଟି ନିଜର ଭୁଲ ବୁଝିପାରି ନୀରବ ରହିଲା ।

(ଚୀନ୍ ଦେଶର କଥା)

*ଆଲୋକ ନଗର, ନିଆଳୀ-୭୫୪୦୦୪* ✲✲

**ବୁଦ୍ଧି ପରୀକ୍ଷାର ଉତ୍ତର**

୧ । ୮ କିଲୋମିଟର, ୨ । ବାରାଣସୀ (ଗୋଦାବରୀ, ଇରାବତୀ ଓ ବଂଶଧାରା ୩ଟି ନଦୀ), ୩ । କାର୍ତ୍ତିକ (ଅନ୍ୟଗୁଡ଼ିକ ମାସର ନାମ ନୁହେଁ), ୪ । ମାଉସୀ, ୫ । ୩୫, ୬ । ବୃଦ୍ଧ ବ୍ୟକ୍ତିଙ୍କୁ ।

# କଟରା କଟରୀ

ଶ୍ରୀମତୀ ସୁଷମା ମିଶ୍ର

ତୁମ୍ଭେମାନେ ସମସ୍ତେ ବେଙ୍ଗ ଦେଖିଥିବ। ବେଙ୍ଗ ଗୋଟିଏ ଉଭୟଚର ପ୍ରାଣୀ। ସାଧାରଣତଃ ସେମାନେ ସନ୍ତସନ୍ତିଆ ସ୍ଥାନ-- ସାରୁଗଛ, ବୁଦାମୂଳ ଏବଂ ଜଳପୂର୍ଣ୍ଣ ସ୍ଥାନମାନଙ୍କରେ ରହିଥାନ୍ତି। ବେଙ୍ଗର ଆଖିଦୁଇଟି ତା'ର ଉପରିଭାଗରେ ଥିବା ଫଳରେ ସେ ସବୁଦିଗକୁ ଦେଖିପାରେ। ବର୍ଷା ଦିନେ ସମସ୍ତେ ବେଙ୍ଗରଡ଼ି ଶୁଣିଥିବ। ଜଳପୂର୍ଣ୍ଣ ସ୍ଥାନରେ ମାଇବେଙ୍ଗ ବହୁତ ଅଣ୍ଡା ଦିଏ। ଅଣ୍ଡା ଫୁଟି ତା' ଦେହରୁ ବେଙ୍ଗଫୁଲା ବାହାରେ। ତା'ର ଗୋଟିଏ ଲାଞ୍ଜ ଥାଏ। ବେଙ୍ଗ ଶରୀରର ଅଙ୍ଗପ୍ରତ୍ୟଙ୍ଗ ଯେତିକି ବଢୁଥାଏ, ତାର ଲାଞ୍ଜଟି ସେତିକି ଛୋଟ ହୋଇଯାଉଥାଏ। ପୂର୍ଣ୍ଣାଙ୍ଗ ବେଙ୍ଗରେ ପରିଣତ ହେଲାବେଳକୁ ଲାଞ୍ଜଟି ଆଉ ନ ଥାଏ। ଚାରିଆଡ଼େ କୁନି କୁନି ବେଙ୍ଗ ବହୁଳ ପରିମାଣରେ ଡେଇଁ ବୁଲନ୍ତି। ସେଥିରୁ ଅନେକ ଦଳାଚକଟାରେ ମରିଯାଆନ୍ତି।

ଗୋଟିଏ ବଡ଼ ବଣସାରୁ ବୁଦା ଥିଲା। ଜାଗାଟି ସନ୍ତସନ୍ତିଆ ଥିବାରୁ ବୁଦାଟି ମାଡ଼ି ଅନେକ ଜାଗା ଅଧିକାର କରିଥିଲା। ସେହି ବୁଦାମୂଳେ ଗୋଟିଏ ପୁରୁଷ ବେଙ୍ଗ ରହୁଥିଲା। ଏକୁଟିଆ ଥିବାରୁ ସର୍ବଦା ତା'ର ମନ ଦୁଃଖ ଥାଏ। ଦିନେ ଆଉ ଗୋଟିଏ ବେଙ୍ଗ ସେଠାରେ ଆସି ପହଞ୍ଚିଲା ଏବଂ ସେଇଟି ମାଇବେଙ୍ଗ ଥିଲା। ପୁରୁଷ ବେଙ୍ଗ ବେଶି କଟର କଟର ଶବ୍ଦ କରନ୍ତି। ମାଇ ବେଙ୍ଗଟି ତା' ନାଁ ଦେଇଥିଲା କଟରା। 'କଟରା' ମଧ୍ୟ ଛାଡ଼ିଲା ନାହିଁ। ସେ କହିଲା-- ମୋ ନାମ କଟରା ହେଲେ ତୋ' ନାମ କଟରୀ। ଦିନ ଗଡ଼ି ଚାଲିଲା। ସେମାନେ ଦୁଇଜଣ ଏକାଠି ଥିଲେ। ଧୀରେ ଧୀରେ ସେମାନଙ୍କର ସଂସାର ବଢ଼ିଲା। କଟରା-କଟରୀଙ୍କର ବୟସ ହୋଇଗଲା। ତାଙ୍କ ପରିବାରର ବେଙ୍ଗମାନେ ବଡ଼ ହୋଇ ଏଣେତେଣେ ବୁଲି ସଂଧ୍ୟାବେଳକୁ ସେହି ଗୋଟିଏ ସ୍ଥାନକୁ ଫେରିଆସୁଥିଲେ। ଦିନେ ଗୋଟିଏ ନେଉଳ ଆସି କଟରା-କଟରୀଙ୍କର ସାଙ୍ଗ ହେଲା। ସେଠାରୁ କିଛି ଦୂରରେ ସେ ରହୁଥିଲା। ସବୁଦିନ ଆସି କଟରା କଟରୀଙ୍କ ସାଙ୍ଗରେ ଦୁଇପଦ କଥା ହୋଇ ନିଜ ଜାଗାକୁ ଫେରିଯାଉଥିଲା।

ଦିନକର କଥା, ଗୋଟିଏ ସାପର ନଜର ବେଙ୍ଗମାନଙ୍କ ଉପରେ ପଡ଼ିଲା। ଟିକିଏ ଚତୁରତା କଲେ କେଉଁଆଡ଼େ ଖାଦ୍ୟ ଖୋଜିବାକୁ ନ ଯାଇ ମଧ୍ୟ ଏଠାରେ ମୋର ଖାଦ୍ୟ ଚଳିଯିବ ବୋଲି କିଛି ସମୟ ଭାବିବା ପରେ ସେ ସ୍ଥିର କଲା, ପ୍ରଥମେ ମୁଁ ଏମାନଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କରି ବିଶ୍ୱାସୀ ହେବି, ତା'ପରେ ମୋର ମନୋକାମନା ପୂର୍ଣ୍ଣ କରିବି। ବେଙ୍ଗମାନେ ବୁଲୁଥିବା ସମୟରେ ସାପଟି ଗୋଟିଏ ଯୁବକ ବେଙ୍ଗକୁ ଡାକି କହିଲା, "ଭାଇ, ମୋର କେହି ସାଥୀ ନାହାନ୍ତି। ମୁଁ ମୋ



ଗାତରେ ରହିବି ଏବଂ ତୁମ ସହିତ ମିଶି ଚଳିବି । ମୁଁ ତୁମର କିଛି କ୍ଷତି କରିବି ନାହିଁ ।'' ସାପକୁ ଦେଖି ବେଙ୍ଗଟି ପ୍ରଥମେ ଡରିଗଲା । ତା'ର ଡର ଛଡ଼ାଇବା ପାଇଁ ସାପଟି ତା' ନିକଟକୁ ଆସି କହିଲା, ''ମୋତେ ଭୟ କରନା ହିଁ । ମୁଁ ଆଜିଠାରୁ ତୁମର ସାଙ୍ଗ । ନିକଟରେ ଯେଉଁ ଜଳାଶୟଟି ଅଛି, ତୁମେ ମୋ ଫଣା ଉପରେ ବସ, ମୁଁ ପହଁରି ପହଁରି ତୁମକୁ ଜଳାଶୟ ଚାରିଆଡ଼େ ବୁଲାଇ ଆଣିବି ।''

ତା'କଥାକୁ ବିଶ୍ୱାସ କରି ଯୁବକ ବେଙ୍ଗଟି ସାପର ଫଣା ଉପରେ ବସିଲା । ସାପ ବେଙ୍ଗକୁ ତା' ଫଣା ଉପରେ ବସାଇ ଜଳାଶୟ ଚାରିପଟେ ବୁଲାଇ ଆଣିଲା । ବେଙ୍ଗର ସାପ ଉପରେ ବିଶ୍ୱାସ ଆସିଗଲା । ସେ ବୁଲିବା ସମୟରେ ତାକୁ ଖୁବ୍ ଖୁସି ଲାଗୁଥିଲା । ସେ ଆସି ଅନ୍ୟ ସବୁ ବେଙ୍ଗଙ୍କୁ ଏହି କଥା ଜଣାଇଲା । ବୁଢ଼ା ବେଙ୍ଗବେଙ୍ଗୁଲୀ (କଟରା କଟରୀ)ସାପର ଚତୁରତା କଥା ବୁଝିଗଲେ । ସବୁ ବେଙ୍ଗଙ୍କୁ ଏକତ୍ର ଡାକି କହିଲେ, ''ସାପ ଆମର ଚିର ଶତ୍ରୁ । ତା' ସହିତ ବନ୍ଧୁତା କରିବା ଅର୍ଥ ନିଜ ଜୀବନ ସହିତ ଖେଳ ଖେଳିବା । ତେଣୁ ତମେସବୁ ତା' କଥା କେହି ଶୁଣନାହିଁ । ନେଉଳ ଭାଇ ସହିତ ପରାମର୍ଶ କରି ତାକୁ କିପରି ଏଠାରୁ ତଡ଼ିବା, ସେ ଉପାୟ ଚିନ୍ତା କର ।'' ସେହି ସମୟରେ ନେଉଳଟି ତାର ଜଣେ ବନ୍ଧୁ ଘରକୁ ବୁଲିବା ପାଇଁ ଯାଇଥିଲା । ବେଙ୍ଗମାନେ ବୟସ୍କ ବେଙ୍ଗବେଙ୍ଗୁଲୀଙ୍କ କଥା ଶୁଣିଲେ ନାହିଁ । ସାପ କଥାରେ ବିଶ୍ୱାସ କରି ଜଳାଶୟ ନିକଟକୁ ଗଲେ । ସାପଟି ଗୋଟିକ ପରେ ଗୋଟିଏ ବେଙ୍ଗକୁ ଫଣାରେ ବସାଇ ଜଳାଶୟ ଚାରିପଟେ ବୁଲାଇ ଆଣୁଥାଏ । ବେଙ୍ଗମାନଙ୍କର ଖୁସି ଦେଖେ କିଏ ? ଏହିପରି କିଛି ଦିନ ଗଲାପରେ ସାପଟି ଗୋଟିଏ ପରେ ଗୋଟିଏ ବେଙ୍ଗ ଗିଳିବା ପାଇଁ ଚିନ୍ତା କଲା । ସାପ ତା'ର ଆହାରକୁ ଚୋବାଇ ଖାଏନାହିଁ, ଗିଳିଦିଏ ।

ଦିନେ ସେ ଗୋଟିଏ ବେଙ୍ଗକୁ ଫଣାରେ ବସାଇ ବୁଲାଇବାକୁ ନେଇ ଦୂରକୁ ଚାଲିଗଲା । ସେଠାରେ ତାକୁ ଗିଳିଦେଇ ଫେରିଆସିଲା । ବେଙ୍ଗମାନେ ପଚାରିବାରୁ କହିଲା, ''ଗଭୀର ଜଳରେ ମୁଁ ଟିକିଏ ଜୋର୍‌ରେ ପହଁରିବା ସମୟରେ ସେ ମୋ ଫଣା ଉପରୁ ଡେଇଁପଡ଼ିଲା । ଯେତେ ଖୋଜିଲେ ମଧ୍ୟ ମୁଁ ତାକୁ ପାଇଲି ନାହିଁ ।'' ସବୁ ବେଙ୍ଗ ସାପ କଥା ବିଶ୍ୱାସ କଲେ । ଏହିପରି ସାପ ଗୋଟିଏ ଗୋଟିଏ ବେଙ୍ଗ ଗିଳି କିଛି କିଛି ବାହାନା ଦେଖାଉଥାଏ । ବେଙ୍ଗମାନେ ସାପର ଚତୁରତା ବୁଝି ନ ପାରି ମନଦୁଃଖରେ ଘରକୁ ଫେରନ୍ତି । ଦିନକୁ ଦିନ ବେଙ୍ଗ ସଂଖ୍ୟା କମିବାକୁ ଲାଗିଲା । କଟରାକଟରୀ ମନଦୁଃଖରେ ଦିନ କାଟୁଥାନ୍ତି । ନେଉଳ ବନ୍ଧୁ ଘରୁ ତା' ଘରକୁ ଫେରି କଟରା କଟରୀଙ୍କ ନିକଟକୁ ଆସିଲା । ସେମାନଙ୍କ ମନଦୁଃଖର କାରଣ ପଚାରି ବୁଝିଲା । କହିଲା, ''ଆଉ ମନଦୁଃଖ କରନାହିଁ । ଯାହା ହେଲାଣି, ଆଉ ଫେରି ଆସିବ ନାହିଁ । କାଲି ସାପ ଯେପରି ମରିବ, ସେ ଉପାୟ ମୁଁ କହୁଛି । ବେଙ୍ଗମାନେ କାଲି ସାପ ସହିତ ଯିବା ପାଇଁ ତାଙ୍କୁ ମନା କରିବ । ଯେତେବେଳେ କେହି ବେଙ୍ଗ ନ ଯିବେ, ସାପ କ୍ରୋଧିତ ହୋଇ ତୁମଆଡ଼କୁ ଅଗ୍ରସର ହେବ । ମୁଁ



ସେତେବେଳେ ବୁଢା ପଛପଟରୁ ବାହାରିଆସି ତାକୁ ମାରିଦେବି।" ତା' ପରଦିନ ସାପ ଆସି ପୂର୍ବ ପରି ଜଳାଶୟ ନିକଟକୁ ଯିବା ପାଇଁ ବେଙ୍ଗମାନଙ୍କୁ ଡାକିଲା। କୌଣସି ବେଙ୍ଗ ସେଦିନ ତା' ସହିତ ଗଲେନାହିଁ। ସେମାନେ ନ ଯିବାରୁ ସାପ କ୍ରୋଧରେ ଗର୍ଜନ କରି ବେଙ୍ଗମାନଙ୍କ ନିକଟକୁ ଅଗ୍ରସର ହେଲା। ଠିକ୍ ସେତିକିବେଳ ନେଉଳଭାଇ ବୁଢା ପଛପଟୁ ବାହାରିଆସି ସାପର ମୁଣ୍ଡକୁ କାମୁଡ଼ି ଧରିଲା। ସାପଟି ଛଟପଟ ହୋଇ ସେଠାରେ ମରିଗଲା। ବେଙ୍ଗର ସାପ ଯେପରି ଶତ୍ରୁ, ନେଉଳ ଠିକ୍ ସେହିପରି ସାପର ଶତ୍ରୁ। ମିତ୍ରର ଅପକାର କରିଥିବାରୁ ନେଉଳଭାଇ ମିତ୍ରଦ୍ରୋହୀର ଅନିଷ୍ଟ କଲା। ତା' ପରଠାରୁ ସେମାନେ ମିଳିମିଶି ଆନନ୍ଦରେ ରହିଲେ।



ଏଥିରୁ ଏତିକି ଶିକ୍ଷାଲାଭ ହେଲା-- (୧) ଶତ୍ରୁ ସହିତ କେବେହେଲେ ମିତ୍ରତା କରିବ ନାହିଁ। ଯଦିବା କର, ତା'ର ଭୁଲାଣିଆ କଥାରେ ବିଶ୍ୱାସ କରିବ ନାହିଁ। (୨) ସର୍ବଦା ବଡ଼ମାନଙ୍କ ଉପଦେଶ ମାନିବ। (୩) କ୍ରୋଧ ସମସ୍ତ ବୁଦ୍ଧିକୁ ଧ୍ୱଂସ କରିଦିଏ ଏବଂ ପ୍ରାଣୀର ଅନିଷ୍ଟ କରେ। ସର୍ବଦା ସମସ୍ତେ କ୍ରୋଧଠାରୁ ଦୂରେଇ ରହିବା ଉଚିତ।

*ନୂଆପଡ଼ା, ବାଲିସାହି, ମଧୁପାଟଣା, କଟକ-୭୫୩୦୧୦*



# କଲରା

ଶ୍ରୀ ଶମ୍ଭୁନାଥ ଦାସ

ଆଇ କହୁଥିଲେ ପିଲାଙ୍କୁ ବସାଇ
ଖାଇବ କଲରା ପିତା
ଅଜା କହୁଥିଲେ ଲୋକଙ୍କୁ ଡକାଇ
ନିଷ୍ଠେ ପଢୁଥିବ ଗୀତା ।
ପରିବା ମଧ୍ୟରେ କଲରାଟି ସିନା
ଖାଇବାକୁ ଲାଗେ ପିତା
ପେଟ ରହେ ସୁସ୍ଥ ସବଳ ନିରୋଗ
ଶରୀର ଜଗତଜିତା ।
ପିତିରି ପିତିରି ମଧୁର ଲାଗଇ
କଲରା ପତର ଭଜା
କଲରା ପତର ବରା ବି ହୁଅଇ
ଖାଇବାକୁ ଭାରି ମଜା ।
କଟା ଭଜା ଆଉ ଗୋଟା ଭଜା ହୁଏ
ଏହି କଲରାରେ ଜାଣ,
କଲରା ରାଇତା ଯିଏ ଖାଉଥାଏ
ତା'ମନ ଅଟଇ ଟାଣ ।

ସାରା ବରଷରେ ଖିଆ ହୁଏ ସିନା
ରଜ ପରବରେ ବେଶି
ବେପାରି ଭାଇନା ଗଣନ୍ତି ପଇସା
ପାନ ଖାଇ ହସି ହସି ।
ଆମେ ଶିଶୁଗଣ କରୁଛୁ ଆହ୍ୱାନ
ଆସ ସର୍ବେ ଗ୍ରାମବାସୀ
କଲରା ଚାଷରେ ବଳାଇବା ମନ
ଭାଇ ଭାଇ ମିଳିମିଶି ।

*୧୨/୧, ମୟୂରଭଞ୍ଜ ରୋଡ, କୋଲକାତା-୭୦୦୦୨୩* ✻

# ବୁଦ୍ଧିମାନ କଙ୍କଡ଼ା

କୁମାରୀ ଚିକୁନ୍ ପଣ୍ଡା

ଗୋଟିଏ ଗାଁ'ରେ ବଡ଼ ନଈଟିଏ ଥିଲା । ସେଥିରେ ଅଜସ୍ର ସଂଖ୍ୟାରେ ମାଛ, କଙ୍କଡ଼ା, ଚିଙ୍ଗୁଡ଼ି ଓ ଅନ୍ୟାନ୍ୟ ଜଳଜାତୀୟ ଜୀବ ଯଥା-- ଗେଣ୍ଡା, ଶାମୁକା ଇତ୍ୟାଦି ଦେଖିବାକୁ ମିଳନ୍ତି । ତେଣୁ ମତ୍ସ୍ୟଜୀବୀଙ୍କ ପାଇଁ ଏହି ନଇ ଥିଲା ପେଟପାଟଣାର କେନ୍ଦ୍ରସ୍ଥଳ; କିନ୍ତୁ ନଈର ମାଛମାନଙ୍କ ପାଇଁ ଏହା ଥିଲା ଦୁର୍ଦ୍ଦିନର ସମୟ ।

ନଈରେ ତିନୋଟି ମାଛ, ବାଳିଆ, ଇଲିଶି ଓ ରୋହି ମାଛ ମଧ୍ୟରେ ଭେଟ ହୋଇଗଲା । ତିନୋଟି ମାଛ ପରସ୍ପରକୁ ଚୁହାଁଚୁହିଁ ହେଲେ । ବାଳିଆ ମାଛ କହିଲା, "ଇଲିଶିଭାଇ, ଏତେ ତରବର ହୋଇ କୁଆଡ଼େ ଯାଉଛ?" ଇଲିଶି କହିଲା, "କ'ଣ କରିବି, ଆଜିକାଲି ଯାହା ଯୁଗ ହେଲାଣି, ବଜାରରେ ଇଲିଶି ମାଛର ଦାମ୍ ବହୁତ ବଢ଼ିଗଲାଣି । ଲୋକମାନେ ମୋତେ ଜାଲ ପକାଇ ଧରିବାକୁ ଚେଷ୍ଟା କରୁଛନ୍ତି ଓ ନିଜର ପାଟି ସ୍ୱାଦକୁ ମେଣ୍ଟାଉଛନ୍ତି । ତେଣୁ ନଈର ବହୁତ ଗଭୀରକୁ ଯାଉଛି; ଯାହା ଫଳରେ ମତେ କେହି ଧରିପାରିବେ ନାହିଁ ।" ବାଳିଆ ମାଛ ପୁଣି କହିଲା, "ଆରେ ରୋହୀଭାଇ ତମେ ବି କ'ଣ ନଈର ଗଭୀର ଜଳରାଶିକୁ ପଳାଉଛ ?" ରୋହିମାଛ କହିଲା, "ହଁ ବାଳିଆଭାଇ, ମୁଁ ଇଲିଶିଭାଇ ସାଙ୍ଗରେ ଯାଉଛି । ତମେ ଯଦି ଯିବାକୁ ଚାହୁଁଛ, ମୋ ସାଙ୍ଗରେ ପଳେଇଆସ ।" ପୁଣି ବାଳିଆ ମାଛ କହିଲା, "ନାଁ ରେ ଭାଇ ମୁଁ ସେ ଗଭୀର ଜଳରାଶି ମଧ୍ୟକୁ ଜମା ଯିବିନି ।" ରୋହୀ ଓ ଇଲିଶି ମାଛ କହିଲେ, "କାହିଁକି, ତମର କ'ଣ ବଞ୍ଚିବାର ଇଚ୍ଛା ନାହିଁ ?" ବାଳିଆ କହିଲା, "ତମେନେ କ'ଣ ଜାଣିନ, ଗଭୀର ଜଳରାଶି ମଧ୍ୟରେ ଆମମାନଙ୍କଠାରୁ ମଧ୍ୟ ଆହୁରି ବଡ଼ ବଡ଼ ମାଛ ଅଛନ୍ତି । ଆଉ ଆମେମାନେ ହେଉଛେ ସେହି ବଡ଼ ବଡ଼ ମାଛମାନଙ୍କର ଖାଦ୍ୟ । ମୋ କଥା ମାନି ତମେମାନେ ମଧ୍ୟ ସେଠାକୁ ଯାଅନାହିଁ ।"

"ଠିକ୍ ଅଛି ବାଳିଆଭାଇ ଆମେ ତମ କଥା ମାନି ସେଠାକୁ ଯିବୁନାହିଁ ।" ଇଲିଶି ମାଛ କହିଲା, "ବାଳିଆଭାଇ, ଆମ ପରି ବହୁତ ମାଛ ନଈରୁ ଖାଲି ହୋଇଗଲେଣି । କାଲି ଯେଉଁ ମାଛକୁ ଭେଟିଥିଲି, ଆଜି ତାର ଦେଖାଦର୍ଶନ ମିଳୁନାହିଁ । ମତେ ଲାଗୁଛି, ପ୍ରତି ମୁହୂର୍ତ୍ତରେ ଆମକୁ ମୃତ୍ୟୁ ଛକି ବସିଛି । କୋଉଠି ଆମର ବଞ୍ଚିବାର ରାହା ନାହିଁ ।" ଏମିତି କିଛି ସମୟ କଥାବାର୍ତ୍ତା ହେବା ପରେ ତିନୋଟି ମାଛ ଶପଥ ନେଲେ-- ଆମେ ଏସବୁ ଅନ୍ୟାୟର ବିରୋଧ କରିବା ଓ ଆମ ଭଳି ମାଛମାନଙ୍କୁ ନ୍ୟାୟ ଦେବା । ବାଳିଆ ମାଛ ଇଲିଶି ଭାଇକୁ ପ୍ରଶ୍ନ କଲା, "କିନ୍ତୁ ଏସବୁ କିପରି ସମ୍ଭବ ହୋଇପାରିବ ଆମ ଭଳି ନିରୀହ ଜଳଜୀବମାନଙ୍କ ଦ୍ୱାରା ?" ହଠାତ୍ ରୋହିମାଛ ମୁଣ୍ଡକୁ ଗୋଟିଏ ବୁଦ୍ଧି ଜୁଟିଲା ଓ ସେ କହିଲା, "ଯଦି ଆମେ କଙ୍କଡ଼ା ଭାଇମାନଙ୍କୁ ଏକାଠି କରିବା,

ତା'ହେଲେ କିଛି ଉପାୟ ବାହାରି ପାରିବ । ସେମାନଙ୍କର ଆମ ଅପେକ୍ଷା ବେଶୀ ବୁଦ୍ଧି । ଇଲିଶି ମାଛ କହିଲା, "କିନ୍ତୁ କଙ୍କଡ଼ା ଆମଠାରୁ କେମିତି ବେଶୀ ବୁଦ୍ଧିଆ ?" ରୋହୀମାଛ କହିଲା, "କଙ୍କଡ଼ାମାନେ ଉଭୟ ଜଳ ଓ ସ୍ଥଳରେ ବାସ କରନ୍ତି । ଆମେ ସିନା ଜଳରୁ ବାହାରିଲେ ମରିଯିବା; କିନ୍ତୁ ସେମାନେ ମରିବେନି । ମୋର ଗୋଟିଏ ବୁଢ଼ା କଙ୍କଡ଼ା ସହିତ ପରିଚୟ ଅଛି ଓ ସେ ନଈ ବାହାରକୁ ଯାଇ ବୁଲାବୁଲି କରେ । ସେ ବହୁତ ଚାଲାକ୍ ହୋଇଥିବ । ଇଲିଶି ଓ ବାଳିଆ ମାଛ କହିଲେ, "ରୋହିଭାଇ ଆମେ ଯେତେ ଶୀଘ୍ର ହେବ ସେଠାକୁ ଯିବା ଉଚିତ୍ ।

ତିନୋଟି ମାଛ ଯାଇ ବୁଢ଼ା କଙ୍କଡ଼ା ପାଖରେ ପହଞ୍ଚି ଗଲେ। ରୋହୀମାଛ ବୁଢ଼ାକଙ୍କଡ଼ାକୁ କହିଲା, "କଙ୍କଡ଼ାଜେଜେ ଆମକୁ ବିପଦରୁ ରକ୍ଷାକର ।" ବୁଢ଼ାକଙ୍କଡ଼ା କହିଲା, "ପିଲାମାନେ ତମର କ'ଣ ଅସୁବିଧା ହୋଇଛି ?" ଇଲିଶି କହିଲା, "ଜେଜେ ନଈରେ ମାଛମାନଙ୍କ ସଂଖ୍ୟା ଦିନକୁ ଦିନ କମିଯାଉଛି । ଆମକୁ ଲାଗୁଛି କେତେବେଳେ ଆମ ପାଳି ବି ପଡ଼ିବ।" ବୁଢ଼ା କଙ୍କଡ଼ା କହିଲା, "ନଈର ସବୁ ମାଛଙ୍କୁ ବଞ୍ଚାଇବା ଅସମ୍ଭବ। ଯଦି ତମେମାନେ ବଞ୍ଚିବାକୁ ଚାହୁଁଛ; ତେବେ ମୋ ପାଖରେ ଗୋଟିଏ ଉପାୟ ଅଛି। ମୋର ଗୋଟିଏ କାଉ ସହିତ ବନ୍ଧୁତା ଅଛି; ସେ ନଈ ପାଖାପାଖି ଗୋଟିଏ ବରଗଛରେ ରହୁଛି।" ରୋହିମାଛ କହିଲା, "ହେଲେ କାଉ ଆମ ପାଇଁ କ'ଣ କରିବ, ସେ ଯଦି ଆମକୁ ଖାଇଦିଏ !" ବୁଢ଼ା କଙ୍କଡ଼ା କହିଲା, "ସେ ବହୁତ ବିଶ୍ୱସ୍ତ। ସେ ବହୁତ ଦିନ ହେଲା ଆମିଷ ଛାଡ଼ିଦେଇଛି; ସେ ତମମାନଙ୍କର କିଛି କରିବ ନାହିଁ।" ମାଛମାନେ କହିଲେ, "ଆମେ ଏବେ କୁଆ ପାଖକୁ ଯିବାକୁ ଚାହୁଁଛୁ।" ବୁଢ଼ା କଙ୍କଡ଼ା କହିଲା, "ଏବେ ଯିବା ସମ୍ଭବ ନୁହେଁ; କାରଣ ତୁମେ ନଈ ବାହାରକୁ ଯାଇପାରିବ ନାହିଁ। ମୁଁ କାଉ ସହିତ କଥାବାର୍ତ୍ତା କରି ସାରେ। ସେ ନଈ ପାଖକୁ ଆସି ତମମାନଙ୍କୁ ନେଇଯିବ।"



ବୁଢ଼ା କଙ୍କଡ଼ା ଏହା କହି ସାରି କାଉ ପାଖକୁ ଦେଖା କରିବା ପାଇଁ ଚାଲିଗଲା । ବୁଢ଼ା କଙ୍କଡ଼ା ଯାଇ କାଉ ପାଖରେ ପହଞ୍ଚିଲା ଓ ତିନୋଟି ମାଛଙ୍କ ଦୁଃଖ ବିଷୟରେ ଜଣାଇଲା । ଏସବୁ ଶୁଣି କାଉ କହିଲା, "ଗାଁ ନିକଟରେ ଗୋଟେ ଜଙ୍ଗଲ ଅଛି ଓ ଜଙ୍ଗଲ ଭିତରେ ଗୋଟେ ଛୋଟ ନଈ ଅଛି। ସେହି ନଈକୁ କୁମ୍ଭୀର ଅଛି ଭାବି କେହି ଯାଆନ୍ତି ନାହିଁ; ସେଠାରେ ମଧ୍ୟ ବହୁତ ମାଛ ଅଛନ୍ତି; ବହୁତ ଖୁସିରେ ଦିନ କାଟୁଛନ୍ତି; ଯୋଉ ମାଛମାନଙ୍କ କଥା କହୁଛ, ସେମାନେ ସେଠାକୁ ଗଲେ ବହୁତ ଆନନ୍ଦରେ ରହିବେ।" ବୁଢ଼ା କଙ୍କଡ଼ା କାଉକୁ ନଈକୁ ଆସିବା ପାଇଁ ନିବେଦନ କଲା ଓ କାଉ ମଧ୍ୟ ରାଜି ହୋଇ ବୁଢ଼ା କଙ୍କଡ଼ା ସହିତ ନଈକୁ ଗଲା । ଇଲିଶି, ବାଳିଆ ଆଗରୁ ପ୍ରସ୍ତୁତ ହୋଇଥିଲେ କାଉ ସହିତ ଯିବା ପାଇଁ; କାଉକୁ ଦେଖି ସେମାନଙ୍କ ମନରେ ଦମ୍ଭ ଆସିଗଲା; ହେଲେ କାଉ ସାଙ୍ଗରେ ଯିବେ କେମିତି ? ବୁଦ୍ଧିମାନ ବୁଢ଼ା କଙ୍କଡ଼ା ଉପାୟ ବତାଇଦେଲା ଓ କହିଲା, "ଗୋଟିଏ ସୁତୁଲି କାଉ ତା' ଥଣ୍ଟରେ କାମୁଡ଼ି ଧରିବ ଓ କାଉ ଥଣ୍ଟରୁ ଓହଳିଥିବା ସୂତାକୁ ତିନୋଟି ମାଛ କାମୁଡ଼ି ଧରି ଅନ୍ୟ ନଦୀକୁ ଯାତ୍ରା କରିବେ ।" ସବୁ ସ୍ଥିର ହୋଇଗଲା । ତିନୋଟି ମାଛ କାଉ ସାଙ୍ଗରେ ଗଲାବେଳେ ବୁଢ଼ା କଙ୍କଡ଼ାକୁ କହିଲେ, "କଙ୍କଡ଼ାଜେଜେ ତମେ ବି ଆମ



ସହିତ ଆସ।" ବୁଢ଼ା କଙ୍କଡ଼ା କହିଲା, "ପିଲାମାନେ ମୁଁ ବା ଆଉ କେତେଦିନ ବଞ୍ଚିବି ? ତମମାନଙ୍କର ବୟସ ଅଛି, ଖୁସିରେ ରୁହ। ମୁଁ ମୋର ଅନ୍ୟାନ୍ୟ ନାତିନାତୁଣୀଙ୍କୁ ଛାଡ଼ି ଯାଇପାରିବି ନାହିଁ। ମୋର ଭାଗ୍ୟରେ ଯାହା ଥିବ।"

ବୁଢ଼ା କଙ୍କଡ଼ାଠାରୁ ଏସବୁ ଶୁଣି ତିନୋଟି ମାଛଙ୍କ ଆଖିରେ ଲୁହ ଜକେଇ ଆସିଲା ଓ ସେମାନେ ସେଠାରୁ ବିଦାୟ ନେଲେ । ଅନ୍ୟ ନଈରେ ପହଞ୍ଚିଲେ ଓ ଖୁସିରେ କାଳାତିପାତ କଲେ।

ଏଇ ମାଛମାନଙ୍କ ଭଳି ସାହାଯ୍ୟ କରିବରେ ମନୋବୃତ୍ତି ରଖିଲେ ମଣିଷମାନେ ହିଂସା, ବାଦ ଭୁଲି ଆନନ୍ଦରେ ରହିପାରିବେ । କେବଳ ମଣିଷମାନଙ୍କ ମନରେ ହିଂସା, ଈର୍ଷା ଇତ୍ୟାଦି ଥାଏ, ପ୍ରାଣୀଙ୍କ ଭିତରେ ନ ଥାଏ।

*ଖପୁରିଆ, ନେତାଜୀନଗର, ମଧୁପାଟଣା, କଟକ- ୧୦*

# ମୁକ୍ତିର ଉପାୟ

ଶ୍ରୀ ଦେବେନ୍ଦ୍ରନାଥ ପ୍ରଧାନ

ପୁରାଣ ହେଉଛି ଭାରତୀୟ ସଂସ୍କୃତିର ଅମୂଲ୍ୟନିଧି । ପୁରାଣରେ ମାନବ ଜୀବନକୁ ଉନ୍ନତ କରିବା ଭଳି ଏଥିରେ ଅନେକ ସରସ, ସୁନ୍ଦର, ସରଳ ଓ ବିଚିତ୍ର କାହାଣୀ ପରିପୂର୍ଣ୍ଣ। ସେହି କାହାଣୀଗୁଡ଼ିକର ଉଦ୍ଦେଶ୍ୟ ରାଗ, ଦ୍ୱେଷରୁ ମୁକ୍ତି ହୋଇ ସ୍ୱକର୍ତ୍ତବ୍ୟ ପାଳନ କରିବାରେ ଓ ଭଗବାନଙ୍କୁ ପ୍ରାପ୍ତ କରିବାରେ ନିହିତ। ପଦ୍ମପୁରାଣରେ ଭୂମିଖଣ୍ଡରେ ଏପରି ଗୋଟିଏ କଥା ଅଛି।

ଅମରକଣ୍ଟକ ତୀର୍ଥରେ ସୋମଶର୍ମା ନାମକ ଜଣେ ବ୍ରାହ୍ମଣ ଥିଲେ। ତାଙ୍କର ପତ୍ନୀଙ୍କ ନାମ ସୁମନା। ସେ ବଡ଼ ସାଧ୍ୱୀ ଓ ପତିବ୍ରତା ଥିଲେ। ତାଙ୍କର କୌଣସି ସନ୍ତାନ ନ ଥିଲା ଏବଂ ତାଙ୍କ ପାଖରେ ଧନର ମଧ୍ୟ ଅଭାବ ଥିଲା। ସନ୍ତାନ ଓ ଧନ ଅଭାବରୁ ସୋମଶର୍ମା ବହୁତ ଦୁଃଖୀ ରହୁଥିଲେ। ଦିନେ ନିଜ ପତିଙ୍କୁ ଅତି ଚିନ୍ତିତ ଦେଖି ସୁମନା କହିଲେ--"ପ୍ରାଣନାଥ! ତୁମେ ଚିନ୍ତା ଛାଡ଼ିଦିଅ କାରଣ ଚିନ୍ତା ସମାନ ଅନ୍ୟ କୌଣସି ଦୁଃଖ ନାହିଁ। ସ୍ତ୍ରୀ, ପୁତ୍ର, ଧନ ପାଇଁ ତ କଦାପି ଚିନ୍ତା କରିବା ଉଚିତ ନୁହେଁ। ଋଣାନୁବନ୍ଧ ଯୋଗୁଁ ଅର୍ଥାତ୍ କାହାର ଋଣ ପରିଶୋଧ କରିବା ପାଇଁ ଏବଂ କାହାଠାରୁ ଋଣ ଆଦାୟ କରିବା ପାଇଁ ହିଁ ଜୀବର ଜନ୍ମ ହୁଏ। ମାତା, ପିତା, ସ୍ତ୍ରୀ, ପୁତ୍ର, ଭାଇ, ସେବକ ପ୍ରଭୃତି ସମସ୍ତେ ନିଜ ନିଜର ଋଣାନୁବନ୍ଧତା ଯୋଗୁଁ ହିଁ ଏହି ପୃଥିବୀରେ ଜନ୍ମ ନେଇ ଆମକୁ ପ୍ରାପ୍ତ ହୁଅନ୍ତି। କେବଳ ମନୁଷ୍ୟ ନୁହେଁ, ପଶୁପକ୍ଷୀ ମଧ୍ୟ ଋଣାନୁବନ୍ଧତାରୁ ହିଁ ଆସନ୍ତି।

ସଂସାରରେ ଶତ୍ରୁ, ମିତ୍ର ଓ ଉଦାସୀନ-- ଏପରି ତିନିପ୍ରକାରର ପୁତ୍ର ଥାଆନ୍ତି। ଶତ୍ରୁ ସ୍ୱଭାବର ପୁତ୍ର ଦୁଇପ୍ରକାର। ପ୍ରଥମତଃ ପୂର୍ବ ଜନ୍ମରେ ଯଦି କେହି କାହାଠାରୁ ଋଣ ନେଇଥାଏ; କିନ୍ତୁ ପରିଶୋଧ କରି ନ ଥାଏ, ତେବେ ପରଜନ୍ମରେ ଋଣ ନେଇଥିବା ବ୍ୟକ୍ତି ସେହି ଋଣ ଦେଇଥିବା ବ୍ୟକ୍ତିର ପୁତ୍ର ହୁଏ। ଦ୍ୱିତୀୟତଃ ପୂର୍ବ-ଜନ୍ମରେ ଯଦି କେହି କାହା ନିକଟରେ କିଛି ବନ୍ଧକ ଦ୍ରବ୍ୟ ରଖିଥାଏ; କିନ୍ତୁ ବନ୍ଧକ ଫେରେଇବାର ସମୟ ଆସିଲେ ସେ ବନ୍ଧକ ନ ଫେରେଇ ଅପହରଣ କରେ, ତେବେ ପରଜନ୍ମରେ ବନ୍ଧକ ରଖିଥିବା ବ୍ୟକ୍ତି ବନ୍ଧକ ଦ୍ରବ୍ୟକୁ ଅପହରଣ କରିଥିବା ବ୍ୟକ୍ତିର ପୁତ୍ର ହୁଏ।

ଏଇ ଦୁଇପ୍ରକାରର ପୁତ୍ର ପିଲାବେଳୁ ପିତାମାତାଙ୍କ ସଙ୍ଗରେ ଶତ୍ରୁତା ରଖନ୍ତି ଏବଂ ଶତ୍ରୁ ପରି ବ୍ୟବହାର କରନ୍ତି। ବଡ଼ ହୋଇଗଲେ ସେମାନେ ପିତାମାତାଙ୍କ ସମ୍ପତ୍ତିକୁ ବୃଥାରେ ନଷ୍ଟ କରନ୍ତି। କିନ୍ତୁ ମିତ୍ର ସ୍ୱଭାବର



ପୁତ୍ର ପିଲାଦିନରୁ ପିତାମାତାଙ୍କର ହିତାକାଂକ୍ଷୀ ହୁଏ । ସେ ସର୍ବଦା ପିତାମାତାଙ୍କୁ ସନ୍ତୁଷ୍ଟ ରଖେ । ସ୍ନେହ ଓ ମଧୁର ବଚନ କହି ସେମାନଙ୍କୁ ପ୍ରସନ୍ନ କରିବା ପାଇଁ ଚେଷ୍ଟା କରେ । ପିତାମାତାଙ୍କ ମୃତ୍ୟୁ ପରେ ସେ ସେମାନଙ୍କ ପାଇଁ ଶ୍ରାଦ୍ଧ, ତର୍ପଣ, ତୀର୍ଥଯାତ୍ରା, ଦାନ ଆଦି ମଧ୍ୟ କରେ । ଉଦାସୀନ ସ୍ୱଭାବର ପୁତ୍ର ସର୍ବଦା ଉଦାସୀନ ଭାବରେ ରହେ । ସେ କିଛି ଦିଏନାହିଁ କି ନିଏନାହିଁ । କେବେ ରୁଷ୍ଟ ହୁଏନାହିଁ କି କେବେ ସନ୍ତୁଷ୍ଟ ହୁଏନାହିଁ । ସୁଖ ଦିଏନାହିଁ କି ଦୁଃଖ ଦିଏନାହିଁ । ପୁତ୍ର ଯେପରି ତିନିପ୍ରକାରର ହୋଇଥାନ୍ତି--ମାତା, ପିତା, ପତ୍ନୀ, ପୁତ୍ର, ଭାଇ ପ୍ରଭୃତି ଏବଂ ଚାକର, ପଡ଼ୋଶୀ, ମିତ୍ର ତଥା ଗାଇ, ମଇଁଷି, ଘୋଡ଼ା ପ୍ରଭୃତି ମଧ୍ୟ ସେହିପରି ତିନିପ୍ରକାରର (ଶତ୍ରୁ, ମିତ୍ର, ଉଦାସୀନ) ହୋଇଥାଆନ୍ତି । ଆମ ସହିତ ସେମାନଙ୍କର ସମ୍ବନ୍ଧ କେବଳ ଋଣାନୁବନ୍ଧତା ଯୋଗୁଁ ହିଁ ହୋଇଥାଏ ।

ସ୍ୱାମୀ, ଯାହାକୁ ଯେତେ ଧନ ମିଳିବାର ଥାଏ, ବିନା ପରିଶ୍ରମରେ ମଧ୍ୟ ତାକୁ ସେତିକି ଧନ ମିଳିଥାଏ ଏବଂ ଧନ ନଷ୍ଟ ହେବାର ସମୟ ଆସିଲେ ଯେତେ ରକ୍ଷା କଲେ ମଧ୍ୟ ତାହା ନଷ୍ଟ ହୋଇଯାଏ -- ଏହା ବୁଝି ତୁମେ ଧନ ପାଇଁ ଚିନ୍ତା କରିବା ଉଚିତ ନୁହେଁ । ବାସ୍ତବରେ ଧର୍ମ ପାଳନରୁ ହିଁ ପୁତ୍ର ଓ ଧନ ଉଭୟର ପ୍ରାପ୍ତି ହୁଏ । ଧର୍ମାନୁଚରଣ କରୁଥିବା ମନୁଷ୍ୟ ହିଁ ସଂସାରରେ ସୁଖ ପାଏ । ତେଣୁ ଧର୍ମ ଆଚରଣ କର । ଯେଉଁ ମନୁଷ୍ୟ କାୟମନୋବାକ୍ୟରେ ଧର୍ମାଚରଣ କରେ, ତା'ପାଇଁ ସଂସାରରେ କୌଣସି ବସ୍ତୁ ଦୁର୍ଲଭ ହୋଇ ରହେନାହିଁ ।''

ଏପରି କହିସାରି ସୁମନା ବିସ୍ତାରପୂର୍ବକ ଧର୍ମର ସ୍ୱରୂପ ତଥା ତାହାର ଅଙ୍ଗଗୁଡ଼ିକୁ ବର୍ଣ୍ଣନା କଲେ । ତାହା ଶୁଣି ସୋମଶର୍ମା ପଚାରିଲେ--''ତୁମକୁ ଏତେ ଗୂଢ଼ତତ୍ତ୍ୱର ଜ୍ଞାନ ପ୍ରାପ୍ତ ହେଲା କିପରି ?'' ସୁମନା କହିଲେ, ''ତୁମେ ତ ଜାଣିଛ ଯେ ମୋର ପିତା ବଡ଼ ଧର୍ମାତ୍ମା ଓ ଶାସ୍ତ୍ରଜ୍ଞ ଥିଲେ, ଯଦ୍ୱାରା ସାଧୁମାନେ ମଧ୍ୟ ତାଙ୍କୁ ଆଦର କରୁଥିଲେ । ସେ ନିଜେ ମଧ୍ୟ ବଡ଼ ବଡ଼ ସନ୍ଥଙ୍କ ନିକଟକୁ ଯାଉଥିଲେ ଓ ସତ୍‌ସଙ୍ଗ କରୁଥିଲେ । ମୁଁ ତାଙ୍କର ଗୋଟିଏ ବୋଲି ଝିଅ, ତେଣୁ ସେ ମୋ ଉପରେ ଅଧିକ ସ୍ନେହ ରଖୁଥିଲେ ଏବଂ ନିଜ ସଙ୍ଗରେ ମୋତେ ମଧ୍ୟ ସତ୍‌ସଙ୍ଗକୁ ନେଉଥିଲେ । ଏହିପରି ସତ୍‌ସଙ୍ଗ ପ୍ରଭାବରୁ ମୋତେ ମଧ୍ୟ ଧର୍ମର ତତ୍ତ୍ୱ ସମ୍ବନ୍ଧରେ ଜ୍ଞାନ ହେଲା ।''

ଏସବୁ ଶୁଣି ସୋମଶର୍ମା ପୁତ୍ରପ୍ରାପ୍ତିର ଉପାୟ ପଚାରିଲେ । ସୁମନା କହିଲେ--''ତୁମେ ମହାମୁନି ବଶିଷ୍ଠଙ୍କ ନିକଟକୁ ଯାଇ ତାଙ୍କୁ ପ୍ରାର୍ଥନା କର । ତାଙ୍କର କୃପାରୁ ତୁମେ ଗୁଣବାନ୍ ପୁତ୍ରଟିଏ ପ୍ରାପ୍ତ ହୋଇପାରିବ ।'' ପତ୍ନୀଙ୍କ କଥା ଶୁଣି ସୋମଶର୍ମା ବଶିଷ୍ଠଙ୍କ ନିକଟକୁ ଗଲେ । ସେ ବଶିଷ୍ଠଙ୍କୁ ପଚାରିଲେ-- "କେଉଁ ପାପ ଯୋଗୁଁ ମୋତେ ପୁତ୍ର ଓ ଧନ ଅଭାବରେ କଷ୍ଟ ଭୋଗିବାକୁ ପଡୁଛି?'' ବଶିଷ୍ଠ କହିଲେ-- ''ପୂର୍ବ ଜନ୍ମରେ ତୁମେ ବଡ଼ ଲୋଭୀ ଥିଲ ଏବଂ ଅନ୍ୟମାନଙ୍କ ସହ ଦ୍ୱେଷ ଭାବ ରଖୁଥିଲ । ତୁମେ କେବେହେଲେ ତୀର୍ଥଯାତ୍ରା, ଦେବପୂଜନ, ଦାନ ଆଦି ଶୁଭକର୍ମ କରିନାହଁ । ଶ୍ରାଦ୍ଧଦିନ ଆସିଲେ ତୁମେ ଘରୁ ବାହାରକୁ ଚାଲିଯାଉଥିଲ । ଧନ ହିଁ ତୁମର ସର୍ବସ୍ୱ ହୋଇଥିଲା । ତୁମେ ଦିନ, ରାତି ଧନ ଚିନ୍ତାରେ ବୁଡି ରହୁଥିଲ । ତୁମକୁ କୋଟି କୋଟି ସ୍ୱର୍ଣ୍ଣମୁଦ୍ରା ମିଳିଗଲା । ତଥାପି ତୁମର ତୃଷ୍ଣା ମେଣ୍ଟିଲା ନାହିଁ, ବରଂ ଅଧିକାଧିକ ବଢ଼ି ଚାଲିଲା । ତୁମେ ଜୀବନସାରା ଯେତେ ଧନ ଉପାର୍ଜନ କରିଥିଲ, ସବୁ ମାଟିତଳେ ପୋତିଦେଲ । ସ୍ତ୍ରୀ ଓ ପୁତ୍ରମାନେ ପଚାରୁଥାଆନ୍ତି; କିନ୍ତୁ ତୁମେ ସେମାନଙ୍କୁ ଧନ ଦେଲନାହିଁ କି ଧନ କେଉଁଠି ଅଛି କହିଲ ନାହିଁ । ଧନ ଲୋଭରେ ପଡ଼ି ତୁମେ ପୁତ୍ରସ୍ନେହ ମଧ୍ୟ ଭୁଲିଗଲ ।



ସୋମଶର୍ମାଙ୍କ ପୁତ୍ରର ନାମ ଥିଲା ସୁବ୍ରତ। ସୁବ୍ରତ ବାଲ୍ୟକାଳରୁ ଭଗବାନଙ୍କର ଅନନ୍ୟ ଭକ୍ତ ଥିଲା। ଖେଳବୁଲ କଲାବେଳେ ତା'ମନ ଭଗବାନ ବିଷ୍ଣୁଙ୍କ ଧ୍ୟାନରେ ମଗ୍ନ ରହୁଥାଏ। ମା' ସୁମନା ତାକୁ ଖାଇବାକୁ ଡାକିଲେ ସେ କହେ --''ମାଆ ! ଭଗବାନଙ୍କ ନାମ ଅମୃତସଦୃଶ। ମୁଁ

ସେଇ ସବୁ କର୍ମ ଯୋଗୁଁ ତୁମେ ଏ ଜନ୍ମରେ ଦରିଦ୍ର ଓ ପୁତ୍ରହୀନ ହେଲ। ଅବଶ୍ୟ ତୁମେ ଥରେ ଖୁସି ମନରେ ତୁମ ଘରକୁ ଅତିଥି ରୂପେ ଆସିଥିବା ଜଣେ ବିଷ୍ଣୁଭକ୍ତ ଓ ଜଣେ ଧର୍ମାତ୍ମା ବ୍ରାହ୍ମଣଙ୍କର ସେବା କରିଥିଲ। ତା'ଛଡ଼ା ତୁମେ ସପତ୍ନିକ ଏକାଦଶୀ ବ୍ରତ ପାଳନ କରି ଭଗବାନ ବିଷ୍ଣୁଙ୍କୁ ପୂଜା ମଧ୍ୟ କରିଥିଲ। ଏପରି କାରଣରୁ ତୁମକୁ ଉତ୍ତମ ବ୍ରାହ୍ମଣ କୁଳରେ ଜନ୍ମ ମିଳିଲା। ବିପ୍ରବର! ଉତ୍ତମ ସ୍ତ୍ରୀ, ପୁତ୍ର, କୁଳ, ରାଜ୍ୟ, ସୁଖ, ମୋକ୍ଷ ପ୍ରଭୃତି ଦୁର୍ଲଭ ବସ୍ତୁଗୁଡ଼ିକର ପ୍ରାପ୍ତି ବିଷ୍ଣୁଙ୍କ କୃପାରୁ ହିଁ ହୁଏ। ତେଣୁ ତୁମେ ଭଗବାନ ବିଷ୍ଣୁଙ୍କର ଶରଣ ଯାଅ ଏବଂ ତାଙ୍କ ଭଜନ କର।''

ବଶିଷ୍ଠ ଏହିପରି ବୁଝାଇବାରୁ ସୋମଶର୍ମା ସପତ୍ନିକ ତତ୍‌ପରତାର ସହ ମନପ୍ରାଣ ଦେଇ ଭଗବାନ୍‌ଙ୍କ ଭଜନରେ ମଜ୍ଜି ରହିଲେ। ଉଠାବସା କଲାବେଳେ, ଚାଲବୁଲ କଲାବେଳେ, ସବୁ ସମୟରେ ସେ ଦୁହିଁଙ୍କର ଲକ୍ଷ୍ୟ ଭଗବାନ୍‌ଙ୍କ ପ୍ରତି ଥାଏ। ବଡ଼ ବଡ଼ ବିଘ୍ନ ଆସିଲେ ମଧ୍ୟ ସେ ଦୁହେଁ ନିଜ ସାଧନାରୁ ବିଚଳିତ ହେଉ ନ ଥିଲେ। ଏହିପରି ସେ ଦୁହିଁଙ୍କର ନିଷ୍ଠା ଦେଖି ଭଗବାନ୍ ତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ। ଭଗବାନ୍‌ଙ୍କ ବରଦାନରୁ ସେ ଦୁହିଁଙ୍କୁ ମନୁଷ୍ୟ ଲୋକରେ ଉତ୍ତମ ଭୋଗ ଓ ଧନପ୍ରାପ୍ତି ହେଲା। ପୁତ୍ରଟିଏ ମଧ୍ୟ ହେଲା।

ସର୍ବଦା ତାହାକୁ ପାନ କରି ତୃପ୍ତ ରହୁଛି।'' ତାକୁ କିଛି ମିଠାଇ ଖାଇବାକୁ ଦେଲେ ପ୍ରଥମେ ସେ ଭଗବାନଙ୍କୁ ଅର୍ପଣ କରି କହେ-- ''ଏଥିରେ ଭଗବାନ ତୃପ୍ତ ହୁଅନ୍ତୁ।'' ସେ ଶୋଇବାବେଳେ ଭଗବାନଙ୍କୁ ଚିନ୍ତନ କରି କହେ-- ''ମୁଁ ଯୋଗନିଦ୍ରା ପରାୟଣ ଭଗବାନ ଶ୍ରୀକୃଷ୍ଣଙ୍କ ଶରଣାପନ୍ନ।'' ଏହିପରି ଭୋଜନ, ବସ୍ତ୍ରଧାରଣ, ଶୟନ ଓ ଜାଗରଣ ପ୍ରତ୍ୟେକ ସମୟରେ ସେ ଭଗବାନଙ୍କ ଚିନ୍ତନରେ ମନ ଦେଉଥିଲା ଏବଂ ସମସ୍ତ ବସ୍ତୁକୁ ଭଗବାନଙ୍କୁ ଅର୍ପଣ କରୁଥିଲା। ଯୁବାବସ୍ଥା ହେବା ପରେ ବି ସେ ଭୋଗରେ ଆସକ୍ତ ହେଲାନାହିଁ। ତା'ର ଭକ୍ତିରେ ପ୍ରସନ୍ନ ହୋଇ ଭଗବାନ ବିଷ୍ଣୁ ତା'ଆଗରେ ଆବିର୍ଭୂତ ହେଲେ। ଭଗବାନ ତାକୁ ବର ମାଗିବାକୁ କହିବାରୁ ସେ କହିଲା, ''ପ୍ରଭୁ ! ଯଦି ଆପଣ ମୋ ଉପରେ ପ୍ରସନ୍ନ, ତେବେ ମୋର ପିତାମାତାଙ୍କୁ ଆପଣ ସଶରୀରେ ଆପଣଙ୍କର ପରମଧାମକୁ ନେଇଯାଆନ୍ତୁ।'' ଭଗବାନ ସୁବ୍ରତର ଭକ୍ତିରେ ସନ୍ତୁଷ୍ଟ ହୋଇ 'ତଥାସ୍ତୁ' କହିଲେ। ଏହିଭଳି ପୁତ୍ରର ଭକ୍ତି ପ୍ରଭାବରେ ସୋମଶର୍ମା ଓ ସୁମନା ମଧ୍ୟ ଭଗବାନଦ୍ଧାମ ପ୍ରାପ୍ତ ହେଲେ।

ଏହି ଆଖ୍ୟାନରେ ଗୋଟିଏ ବିଶେଷ କଥା ହେଲା-- ସଂସାରରେ କାହାର ଋଣ ପରିଶୋଧ କରିବା ପାଇଁ ଏବଂ କାହାଠାରୁ ଋଣ ଆଦାୟ କରିବା ପାଇଁ ହିଁ

ଜନ୍ମ ମିଳେ। କାରଣ ଏ ଜୀବ ଅନେକଙ୍କଠାରୁ ନେଇଛି ଏବଂ ଅନେକଙ୍କୁ ଦେଇଛି। 'ନେବା ଓ ଦେବା'ର ଏପରି ବ୍ୟବହାର ଅନେକ ଜନ୍ମରୁ ହୋଇଆସୁଛି। ଏହାକୁ ସ୍ଥଗିତ ନ କଲା ପର୍ଯ୍ୟନ୍ତ ଜନ୍ମ, ମରଣରୁ ମୁକ୍ତି ମିଳିବା ସମ୍ଭବ ନୁହେଁ।

ଯଦି ମନୁଷ୍ୟ ଭକ୍ତ ସୁବ୍ରତ ପରି ସର୍ବ ଭାବରେ ଭଗବାନଙ୍କ ଭଜନରେ ମନ ଦିଏ, ତେବେ ତାର ସମସ୍ତ ଋଣ ସମାପ୍ତ ହୋଇଯିବ, ଅର୍ଥାତ୍ ସେ କାହାର ହେଲେ ଋଣୀ ହୋଇ ରହିବ ନାହିଁ। ଭଗବତ୍ ଭଜନ ପ୍ରଭାବରୁ ସେ ସମସ୍ତ ଋଣରୁ ମୁକ୍ତ ହୋଇ ସବୁଦିନ ପାଇଁ ଜନ୍ମମରଣ ଚକ୍ରରୁ ମୁକୁଳିଯିବ ଏବଂ ଭଗବାନଙ୍କ ପରମଧାମ ପ୍ରାପ୍ତ ହେବ।

(ଆଦର୍ଶ କାହାଣୀ ଚୟନ ଅବଲମ୍ବନରେ)

*ଅନ୍ତପାଲି, କମଗାଁ, ବରଗଡ଼- ୭୬୮୦୩୮*

**

# ଗୋହିରି ପାଟ

ଶ୍ରୀ ସୁକାନ୍ତ କୁମାର ସେଠୀ

ଶାଗୁଆ କ୍ଷେତର ଓଠ ଛୁଇଁ ଝରେ
ଉଛୁଳା ଗୋହିରି ପାଟ
ବାହୁଡ଼ା ସୂରୁଯ ମୁରୁକି ହସିଲେ
ଝରିପଡ଼େ ତା'ର ପଟ ।
ଜଳଜଳଇର ପତର ଗଭାରେ
ପେନ୍ଥି ପେନ୍ଥି ଚୁନାଫୁଲ
ଶିଶିର ଲୁହ ତା' ଦେହ ପଖାଳିଲେ
ସୁନା ପରି ଦିଶେ ଜଳ ।
କୁମୁଦିନୀ ଗଢ଼େ ଅସୁମାରି ସ୍ୱପ୍ନ
ଇନ୍ଦୁ କଥା ମନେ ଭାଳି
ନୀର ଶିଖେ ହସି ପାଖୁଡ଼ା ମେଲାଏ
ଜ୍ୟୋଛନାକୁ ଓଠେ ବୋଳି ।
ଗେଣ୍ଡାଳିଆ ପଲ ଉଡ଼ିଲେ ଆକାଶେ
ଗୋହିରି ଅଧୀର ହୁଏ
ଭସା ଜୀମୂତରୁ ବରଷା ଝରିଲେ
ଖୁସିରେ ତ ନାଚିଯାଏ।



ନିସର୍ଗର ଭାସ ଝରି ଝରି ଯାଏ
ଡେଉ ସାଥେ ଗୀତ ଗାଇ
କେବେ କେଉଁ ଦିନ ତା'ମନ ବେଦନା
ଶୁଣିଛ କି ତୁମେ କେହି ?

*କଇଥ ଖୋଲା, ଧାମରା, ଭଦ୍ରକ- ୭୫୬୧୭୧*

**

୧। ଚକି, ୨। କଲମ, ୩। ଅଙ୍ଗାର ପାଉଁଶ

# କୁଆଟିଏ କୁଆ ରୂପରେ ହିଁ ରହୁ

ଗୋଟିଏ ଜଂଗଲରେ ଆନନ୍ଦରେ କୁଆଟିଏ ରହୁଥିଲା । ଦିନେ ସେ ଏକ ହଂସକୁ ଦେଖି ଭାବିଲା, "ଆହା, ହଂସଟି କେତେ ଧଳା, କେତେ ସୁନ୍ଦର ଦିଶୁଛି । ସେ ନିଶ୍ଚୟ ପୃଥିବୀର ସବୁଠାରୁ ସୁଖୀ ।" ସେ ଯାଇ ହଂସକୁ ସେୟା କହିଲା । ହଂସଟି କହିଲା, "ମୁଁ ତ ତାହା ହିଁ ଭାବିଥିଲି, ମାତ୍ର ମୁଁ ଯେତେବେଳେ ଶୁଆକୁ ଦେଖିଲି, ମୋର ପୂର୍ବ ଧାରଣା ବଦଳିଗଲା । ଏଇନା ମୁଁ ଭାବୁଛି ଶୁଆ ହିଁ ସବୁଠାରୁ ସୁଖୀ ।"



ତେଣୁ କୁଆଟି ଶୁଆ ପାଖକୁ ଗଲା ଓ ଶୁଆଟିକୁ ସବୁଠାରୁ ସୁଖୀ ବୋଲି କହିଲା । ଶୁଆଟି ଦୁଃଖରେ କହିଲା-- ମୁଁ ତ ସେୟା ଭାବିଥିଲି ମୟୂରକୁ ନ ଦେଖିଲା ପର୍ଯ୍ୟନ୍ତ । ମୋର ତ ମାତ୍ର ଦୁଇଟି ରଂଗର ପର । ମାତ୍ର ମୟୂର ଦେହରେ ତ କେତେ ରଂଗ !



କୁଆ ଗଲା ଚିଡ଼ିଆଖାନା । ସେଠି ମୟୂରକୁ ଦେଖିଲା ଆଉ ସେ ପୃଥିବୀର ସବୁଠୁ ସୁଖୀ ବୋଲି ତାକୁ କହିଲା । ମୟୂର ଦୁଃଖର ସହ କହିଲା, "ନାଇଁରେ କୁଆ ମୁଁ ନିଜକୁ ସବୁଠାରୁ ସୁନ୍ଦର ଆଉ ସୁଖୀ ବୋଲି ଭାବି ଆସିଥିଲି; ମାତ୍ର ମୋର ସୌନ୍ଦର୍ଯ୍ୟ ତ ଏ ଯନ୍ତା ଭିତରେ ବନ୍ଦୀ ! ଚାରିଆଡ଼େ ଚାହିଁଲି, ଦେଖିଲି ଗୋଟିଏ କୁଆ ବି ଯନ୍ତା ଭିତରେ ନାହାନ୍ତି, ମୁକ୍ତ ଭାବରେ ଆକାଶରେ ଉଡ଼ି ବୁଲୁଛନ୍ତି । ତା'ପରେ ଭାବିଲି-- ମୁଁ ଯଦି କୁଆ ହେଇଥାନ୍ତି, ତେବେ ମୁଁ ସବୁଠାରୁ ସୁଖୀ ହେଇଥାନ୍ତି ।"



ଏସବୁ ପକ୍ଷୀ ଦେଖି ସାରିଲା ପରେ କୁଆ ଅନୁଭବ କଲା ଯେ-- ସେ ହିଁ ପ୍ରକୃତରେ ପୃଥିବୀର ସବୁଠାରୁ ସୁଖୀ ।

ଆମର ସମସ୍ୟା ମଧ୍ୟ କୁଆ ଭଳି । ଆମେ ସୁଖୀ ଥାଉ, ଯେତେବେଳେ ଅନ୍ୟମାନଙ୍କୁ ଚାରି ପାଖରେ ଦେଖି ଆମ ସହିତ ତୁଳନା କରୁ, ସେତେବେଳେ ଆମେ ଦୁଃଖୀ ହୋଇଯାଉ । ଈଶ୍ୱର ଆମକୁ ଯାହା ଦେଇଛନ୍ତି, ତାହାକୁ ମୂଲ୍ୟ ନ ଦେଇ ଆମେ ଦୁଃଖୀ ହେଉ । କୁଆ ସବୁ ଦେଖିଲା ପରେ ସବୁ ଜାଣିପାରିଲା, ମାତ୍ର ଆମେ ସବୁ ଦେଖି, ଜାଣି ବି ସୁଖୀ ହେଉନାହୁଁ ।

**



# ନାଗାର୍ଜୁନ

ଶ୍ରୀ ନନ୍ଦକିଶୋର ସିଂହ

ପ୍ରାଚୀନ ଯୁଗରୁ ନାଗାର୍ଜୁନ ନାମରେ କେତେଜଣଙ୍କ ବିଷୟରେ ଆମେ ଜାଣିଛୁ । ଜଣେ ନାଗାର୍ଜୁନ ପ୍ରାଚୀନ ବୈଜ୍ଞାନିକ ଥିଲେ । ସେ ତିବ୍ବତବାସୀଙ୍କର ଦେବତା ରୂପେ ପୂଜା ପାଉଥିଲେ । ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କ 'ଭାରତୀୟ ରସାୟନ ଶାସ୍ତ୍ରରେ ଇତିହାସ' ପୁସ୍ତକରେ ସମ୍ଭବତଃ ଏହି ବୈଜ୍ଞାନିକଙ୍କ ନାମ ଉଲ୍ଲେଖ କରାଯାଇଛି ।

ମାତ୍ର ଏଠାରେ ଯେଉଁ ନାଗାର୍ଜୁନଙ୍କ କଥା ଉଲ୍ଲେଖ କରାଯାଇଛି, ସେ ହେଉଛନ୍ତି ଜଣେ ଅସାଧାରଣ ପ୍ରତିଭାସମ୍ପନ୍ନ ବ୍ୟକ୍ତି । ସେ ମଧ୍ୟ ଜଣେ ବୌଦ୍ଧ ଦାର୍ଶନିକ । ବୌଦ୍ଧଧର୍ମରେ ଶୂନ୍ୟବାଦ ସେ ପ୍ରବେଶ କରାଇଥିଲେ । ଏହି କାରଣରୁ ବୌଦ୍ଧଧର୍ମରେ ଦୁଇଟି ଉପଶାଖା ସୃଷ୍ଟି ହୋଇଥିଲା । ସେ ଦୁଇଟି ହେଲା-- ଯୋଗାଚାର ଓ ମାଧ୍ୟମିକ ।

କେତେକ ମତ ଦିଅନ୍ତି-- ଦାର୍ଶନିକ ନାଗାର୍ଜୁନ ହିଁ ତିବ୍ବତରେ ଦେବତା ରୂପେ ପୂଜା ପାଉଥିବା ବୈଜ୍ଞାନିକ ନାଗାର୍ଜୁନ । ସେ ମଧ୍ୟ ଜଣେ ପ୍ରସିଦ୍ଧ ଚିତ୍ରକାର ଏବଂ ଲେଖକ ଭାବେ ବିଦିତ ।

ଡ. ରାଧାକ୍ରିଷ୍ଣନ୍‌ଙ୍କ ମତରେ-- ନାଗାର୍ଜୁନଙ୍କ ଜନ୍ମ ଦକ୍ଷିଣ ଭାରତର ଏକ ବ୍ରାହ୍ମଣକୁଳରେ । କୁମାରଜୀବଙ୍କ ମତ ହେଉଛି-- ଖ୍ରୀ.ପୂ. ୨ୟ ଶତାବ୍ଦୀରେ ନାଗାର୍ଜୁନଙ୍କ ଜନ୍ମ । ବାଲ୍ୟକାଳରେ ସେ ଜଣେ ମେଧାବୀ ଛାତ୍ର ଥିଲେ । ଶୁଣାଯାଏ, ବୌଦ୍ଧଗ୍ରନ୍ଥ ତ୍ରିପିଟକର ହଜାର ପୃଷ୍ଠାକୁ ସେ ମାତ୍ର ୯୦ ଦିନ ମଧ୍ୟରେ ମନେରଖି ପାରିଥିଲେ ।

ତିବ୍ବତର କେତେକ ଧର୍ମଗ୍ରନ୍ଥରେ ନାଗାର୍ଜୁନ ନାଲନ୍ଦାରେ କିଛିଦିନ ରହିବାର ସୂଚନା ମିଳେ । ଚୀନ ପରିଭ୍ରମଣକାରୀ ୟୁଆନ୍ ତ୍ୱାଙ୍ଗ୍ ଲେଖିଛନ୍ତି, ''ସଂସାରକୁ ଆଲୋକିତ କରିବାକୁ ଚାରିଗୋଟି ସୂର୍ଯ୍ୟ ଜନ୍ମ ନେଇଛନ୍ତି । ସେମାନେ ହେଲେ-- ନାଗାର୍ଜୁନ, ଅଶ୍ୱଘୋଷ, ଆର୍ଯ୍ୟଦେବ ଏବଂ କୁମାରଲବ୍‌ଧ ।''

ନାଗାର୍ଜୁନଙ୍କର ପ୍ରାୟ ୨୦ ଗୋଟି ପୁସ୍ତକ ଚୀନ୍ ଭାଷାରେ ଅନୂଦିତ; କିନ୍ତୁ ଦୁଃଖର କଥା, ଆମ ଦେଶରେ ତାଙ୍କର କୌଣସି ପୁସ୍ତକ ଦେଖିବାକୁ ମିଳେନାହିଁ । ତେବେ ନାଗାର୍ଜୁନଙ୍କ ରଚିତ ପୁସ୍ତକ ମଧ୍ୟରେ 'ମୂଳମଧ୍ୟମ କରିକା' ବେଶ୍ ପ୍ରସିଦ୍ଧି ଲାଭ କରିଛି । ଏହି ପୁସ୍ତକର ଏକ ସଂକ୍ଷିପ୍ତ ଟୀକା ନାଗାର୍ଜୁନ ଲେଖିଛନ୍ତି । ତାଙ୍କ ମତରେ- ଯାହାକୁ ଆମେ ଦୁଃଖ କହୁ, ତାହା ମିଥ୍ୟା । ପ୍ରତ୍ୟେକ କଥା ପରିବର୍ତ୍ତନଶୀଳ । ଏଣୁ କୌଣସି ପଦାର୍ଥ ଅଛି କି ନାହିଁ, ଏକଥା କୁହାଯାଇ ନ ପାରେ । ଏପରିକି



# ବେହେଲା



କି ହେଲାରେ କି ହେଲା
କେଡ଼େ ଛୋଟ ପିଲାଟିଏ
ବଜାଉଛି ବେହେଲା ।
ଦେଖ ଭାଇ ଦେଖରେ
କୁନି ମେଣ୍ଢାଛୁଆଟିଏ
ଅଛି ତାର ପାଖରେ ।
ଟିକିଟିକି ଗୋଡ଼ ତାର ଉଠୁଛି କି ପଡୁଚି
ବେହେଲାର ତାଳେ ତାଳେ ସତେ କି ସେ ଉଡୁଚି ।
ବେହେଲା ଥମିଲା ଯହୁଁ
ପାଦ ତା'ର ରହିଲା,
ଦେଖଣାହାରୀ ଭିତରୁ କେହି ଜଣେ କହିଲା--

"କେଉଁଠୁ ଆସିଛୁ ପିଲା
କିଏ ତତେ ଶିଖାଇଲା ?"
ହସି ହସି କହେ ପିଲା--
"ଘର ମୋର ସୋହେଲା ।
କେହି ମୋତେ ଶିଖାଇନି
କେହି ମୋତେ ଦେଖାଇନି
ଘରେ ବସି ଯହୁଁ କିଛି
ରୋଜଗାର ନ ହେଲା,
ନିଜେ ନିଜେ ଶିଖି ଏବେ
ବଜାଉଛି ବେହେଲା ।" ★

**(ଶିଶୁ-କିଶୋର ପତ୍ରିକା 'ସଂସାର'ର ପ୍ରାଣ ପ୍ରତିଷ୍ଠାତା ରାମକୃଷ୍ଣ ନନ୍ଦଙ୍କର ମହାପ୍ରୟାଣ ଦିବସ ଅକ୍ଟୋବର ୨୮ ତାରିଖ, ୧୯୯୪ ମସିହା । ତାଙ୍କର ଏହି ଶିଶୁ କବିତାଟି 'ଝୁମୁକା' କବିତା ସଂକଳନରୁ ଆନୀତ । ତାଙ୍କୁ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସହିତ ତାଙ୍କର ଆଶୀର୍ବାଦ କାମନା କରୁଛୁ ।)**

**--ସଂସାର ପରିବାର**

---

ପ୍ରତ୍ୟେକ ବସ୍ତୁକୁ ସେ ଶୂନ୍ୟ ବୋଲି ପ୍ରମାଣିତ କରିଛନ୍ତି । ତାଙ୍କର ମତ ହେଲା-- ସଂସାର ହେଉଛି ମାୟା ମରୀଚିକା ଅଥବା ସ୍ୱପ୍ନ । ତାହା ଅଛି କି ନାହିଁ ବୋଲି ଦୃଢ଼ ଭାବେ କହିହେବ ନାହିଁ ।

ଧର୍ମତତ୍ତ୍ୱର ଏ ଜଟିଳତା ଭିତରକୁ ନ ଯାଇ ମୋଟଉପରେ ଆମେ ଏତିକି କହିପାରିବା-- ନାଗାର୍ଜୁନ ଥିଲେ ଜଣେ ବଡ଼ ଚିନ୍ତକ ଓ ଦାର୍ଶନିକ । ଭାରତ ଓ ଚୀନ ମଧ୍ୟରେ ଏକ ଧର୍ମ ଓ ସଂସ୍କୃତି ଭାବର ସମନ୍ୱୟ କେବଳ ନାଗାର୍ଜୁନଙ୍କ ଦ୍ୱାରା ସମ୍ଭବ ହୋଇଥିଲା ।

*କୋରେଇ, ଯାଜପୁର-୭୫୫୦୨୨*





ଆମ ପିଲା ସ୍କୁଲ ଯିବ, ପାଠ ପଢ଼ିବ, ବଡ଼ ମଣିଷ ହେବ --ଏକଥା ସମସ୍ତେ ଭାବନ୍ତି, ସେଥିପାଇଁ ସକାଳୁ ପିଲାଙ୍କୁ ପ୍ରସ୍ତୁତ କରି ସ୍କୁଲ ପଠାଇବା ପାଇଁ ବାପା ମା' ତତ୍ପର ।

ସ୍କୁଲ ଯିବାକୁ ଅନିଚ୍ଛୁକ ପିଲାଟି କିନ୍ତୁ ଚାହୁଁଥାଏ ବର୍ଷା ହେଉ, ଶିକ୍ଷକ ନ ଥା'ନ୍ତୁ, ଛୁଟି ହେଇଯାଉ। କାରଣ ପାଠପଢ଼ାର ଅର୍ଗଳି ଭିତରେ ଏତେ ସମୟ ବସି ରହିବା ପାଇଁ ଅନେକ ପିଲା ଚାହାଁନ୍ତି ନାହିଁ। ସେମାନଙ୍କର ଇଚ୍ଛା ଡିଆଁଡେଇଁ କରି ବୁଲିବେ, ଖେଳିବେ, ଘରକୁ ଆସିବେ।

ଆମ ଘରେ ଯେଉଁ ସାହାଯ୍ୟକାରୀ ସ୍ତ୍ରୀଲୋକଟି ଅଛି, ତା'ର ପୁଅଟି କେବେ ବି ସ୍କୁଲ ଯିବାକୁ ଚାହେଁନାହିଁ। ୫ମ ଶ୍ରେଣୀରେ ପଢୁଛି। ମାତ୍ର ତା'ର ଇଚ୍ଛା ପାଠ ପଢ଼ିବ ନାହିଁ କି ସ୍କୁଲ ଯିବ ନାହିଁ। ତା'ପରେ ତା'ର ବାପାମା' କେହି ପାଠ ପଢ଼ିନାହାନ୍ତି। ତେଣୁ ସେମାନେ ପିଲାର ପାଠପଢ଼ା ପ୍ରତି ଏତେ ଗୁରୁତ୍ୱ ଦେଉନାହାନ୍ତି ବୋଲି ମୁଁ ଜାଣିପାରିଲି। ମୁଁ ପଚାରେ-- ଆଜି କାହିଁକି ସ୍କୁଲ ଯାଇନୁ? ଉତ୍ତର ମିଳେ-- ଆଜି ବାପା ମୋ ସାଇକେଲ ନେଇ କାମକୁ ଗଲେ; ନ ହେଲେ କହିବ-- ସଉଦା ଆଣୁ ଆଣୁ ଡେରି ହେଇଗଲା।

ବର୍ତ୍ତମାନ ଆମେ ଖବରରେ ପଢୁଛେ ଯେ ଅଧିକାଂଶ ସ୍କୁଲରେ ପିଲାଙ୍କର ଉପସ୍ଥାନ ସଂଖ୍ୟା କମ୍। ସେ ସ୍କୁଲ ସବୁ ବନ୍ଦ ହେବା ଉପରେ। କି ଦୁଃଖର କଥା ! ଏହା ଆମ ଶିକ୍ଷା ଜଗତର ଏକ ସମସ୍ୟା।

ଏହାର କାରଣ କ'ଣ ? ମୋର ଚିନ୍ତାଧାରା ଅନୁସାରେ ପ୍ରଥମ କାରଣ ହେଲା--ଆମର ଶିକ୍ଷା ପଦ୍ଧତି। ପିଲାକୁ ଘରକୁ ପାଠ କରିବାକୁ ଦେଇ ଶିକ୍ଷକମାନେ ନିଶ୍ଚିନ୍ତ ହୋଇଯାଆନ୍ତି। ମାତ୍ର ଦେଖାଯାଏ ଯେ ଘରେ ପିଲାମାନେ ପାଠ ନିଜେ କରୁନାହାନ୍ତି, ପ୍ରାୟ ମା, ବାପା କରିଦେଉଛନ୍ତି।

ଆମେରିକାରେ ପିଲାଟିଏ ଯଦି ତା'ର ଶ୍ରେଣୀପାଠ ଠାରୁ ଅଧିକା କହିପାରୁଛି ବା ଜାଣିଛି, ତା'ହେଲେ ପିତାମାତାଙ୍କୁ ଦୋଷୀ ଧରାଯାଏ । ସେଠିକାର ଶିକ୍ଷକମାନେ କହନ୍ତି-- ଘରେ ପାଠ କରିବା ବଦଳରେ ଶ୍ରେଣୀରେ ପିଲାମାନଙ୍କୁ କରିବାକୁ ଦେଲେ ହୁଏତ ତାଙ୍କର ଅକ୍ଷମତା ଶିକ୍ଷକମାନେ ଜାଣିପାରନ୍ତେ। ତା'ପରେ ଘରେ ସ୍କୁଲର ପାଠ କଲେ ମଧ୍ୟ ବାପା, ମା ବତେଇଦେବାରୁ ନିଜର ମସ୍ତିଷ୍କ ସେମାନେ ଖଟାଉନାହାନ୍ତି। ତେଣୁ ନିଜେ ପିଲାଟି ଯେତିକ ପାଠ କରିପାରିବ, ଘରେ ସେତିକି କରୁ। ବାକି କାହିଁକି କରିପାରିଲା ନାହିଁ, ତାହା ଶିକ୍ଷକମାନେ ଅନୁସଂଧାନ କରି ଜାଣିବା ଦରକାର। ତାହାଦ୍ୱାରା ପିଲାମାନଙ୍କର ଜିଜ୍ଞାସୁ ମନୋବୃତ୍ତିକୁ ଏହା ସାହାଯ୍ୟ କରିପାରିବ।

ଶିକ୍ଷକମାନେ ଶିକ୍ଷାଦାନ ପ୍ରଣାଳୀକୁ ପରିବର୍ତ୍ତନ କରି ପିଲାମାନଙ୍କୁ ଆଜିକାଲିର ନୂତନ ଢାଞ୍ଚାରେ ପଢ଼ାଇବାକୁ ହେବ। ଶାରୀରିକ ଦଣ୍ଡ ଦେବା ପରିବର୍ତ୍ତେ ପିଲାଙ୍କ ମନ ନେଇ, ତାଙ୍କର ଆଗ୍ରହ ଅନୁଯାୟୀ ପାଠପଢ଼ାର ଆଧୁନିକ ପଦ୍ଧତିର ଧାରାକୁ ଆମେ ଖୋଜି ବାହାର କରିବାକୁ ପଡ଼ିବ। ତା'ହେଲେ ଯାଇ ପିଲାଟିର ପାଠ ପ୍ରତି ଆଗ୍ରହ ହେବ ।

ବଡ଼ ପିଲାମାନଙ୍କୁ ତ ଧାରା ଅନୁଯାୟୀ ପଢ଼ାଇବାକୁ ହେବ; ମାତ୍ର ଶିଶୁଙ୍କ ପ୍ରତି ଚାପ ପ୍ରୟୋଗ

କରି ପଢ଼ାଇବା ମୋ ମତରେ ଠିକ୍ ନୁହେଁ। ହୁଏତ ତଦ୍ଦ୍ୱାରା ସେମାନେ ଭଲ ପଢ଼ିପାରନ୍ତି; ମାତ୍ର ସେମାନଙ୍କର ଅନ୍ୟାନ୍ୟ ପ୍ରବୃତ୍ତି ବନ୍ଦ ହୋଇ ଅବଲୀଳା କ୍ରମେ ପାଠ ଉପରେ କେନ୍ଦ୍ରୀଭୂତ ହୋଇଯିବ। ସେଥିପାଇଁ କେତେକ ଶିଶୁ ସ୍କୁଲ ଗଲା ପରେ ଚୁପ୍ ହୋଇଯା'ନ୍ତି; କିମ୍ବା ଖେଳାଖେଳି, ହସକୌତୁକ ଭୁଲିଯା'ନ୍ତି । କେତେକ ପିଲାଙ୍କର ବୀତସ୍ପୃହ ତଥା ନିରାଶ ଭାବ ମୁଁ ଅନୁଭବ କରିଛି।

ଦ୍ୱିତୀୟ କଥା ହେଲା-- ପିତା, ମାତା ପିଲାଙ୍କର ଶିକ୍ଷା ପ୍ରତି ଆଗ୍ରହ ସୃଷ୍ଟି କରାଇବା । କର୍ମଜୀବୀ ମହିଳା ଓ ପୁରୁଷମାନଙ୍କର ପିଲାମାନଙ୍କୁ ଘରର କାମ କରିବାକୁ ପଡ଼େ। ବାପା, ମା' ଘରୁ ବାହାରିବା ପରେ ସେମାନେ ଘରର କାମରେ ମନ ଦିଅନ୍ତି, ବଜାର ସଉଦା କରନ୍ତି- ତା'ପରେ ଯାହା ସମୟ ବଳେ, ଖେଳିବାରେ, ଡେଇଁବାରେ, ଟିଭି ଦେଖିବାରେ ସମୟ ବିତାନ୍ତି। ବାପା, ମା ଘରକୁ ଆସିଗଲେ ଦେଖନ୍ତି-- ପିଲା ତାଙ୍କର କଥା ମାନି ସଉଦାପତ୍ର ଆଣିଛି, ସାନଭାଇଭଉଣୀକୁ ଜଗିଛି, ପଡ଼ିଶା ଘରୁ ତୋରାଣି ଆଣି ଗାଇକୁ ଖୁଆଇଛି, ଇତ୍ୟାଦି, ଇତ୍ୟାଦି। ସେମାନେ ଭାରି ଖୁସି ହୁଅନ୍ତି।

ପିଲା ଯେ ପାଠ ପଢ଼ି ଶିକ୍ଷିତ ହେବା ଦରକାର, ଜ୍ଞାନ ଅର୍ଜନ କରିବା ଦରକାର--ଏକଥା ସେମାନେ ଭାବନ୍ତି ନାହିଁ। ଅନେକ ଅଭିଭାବକ ମୁଁ ଦେଖିଛି, ତାଙ୍କର ପିଲା ପାଶ୍ ନ କଲେ ଶିକ୍ଷକମାନଙ୍କୁ ଯାଇ ପାଟି କରନ୍ତି। ତେଣୁ ଏସବୁ ବିଷୟରେ ସଚେତନତା ନିହାତି ଜରୁରୀ। ଯାହା କାମ ଥାଉ ପଛକେ, ପିଲାଙ୍କୁ ଶୃଙ୍ଖଳିତ ହେବା ପାଇଁ ପ୍ରତ୍ୟେକ ଦିନ ସ୍କୁଲକୁ ପଠାଇବା ଆବଶ୍ୟକ। ସକାଳେ ଓ ସଂଧ୍ୟାରେ ଅନ୍ତତଃ ଘଣ୍ଟାଏ କି ଦୁଇଘଣ୍ଟା ପାଠ ପଢ଼ିବା ପାଇଁ ବାପା, ମା ସୁଯୋଗ ଦେବା ନିହାତି ଦରକାର। ସେହି ଅନୁସାରେ ଘରର କାମକୁ ବାପା, ମା' ବାଣ୍ଟିନେଇ କରିବା ଆବଶ୍ୟକ।

ଉପରୋକ୍ତ ବିଷୟକୁ ବିଚାର କରି ବାପା, ମା, ଗୁରୁଜନ ଉଚିତ ପଦକ୍ଷେପ ନ ନେଲେ ଓଡ଼ିଆ ସ୍କୁଲଗୁଡ଼ିକର ଅବସ୍ଥା ନିମ୍ନଗାମୀ ହେବାର ସମ୍ଭାବନା ରହିଛି।

ଇଂରାଜୀ ମାଧ୍ୟମ ବିଦ୍ୟାଳୟଗୁଡ଼ିକରେ ପାଠପଢ଼ା ଶୈଳୀ ଭିନ୍ନ। ସେଠି ପିଲାମାନଙ୍କର ଯତ୍ନ ନେବା ପାଇଁ କର୍ମଚାରୀମାନେ ସଜାଗ ଥାଆନ୍ତି।

ସେହିଭଳି ଯଦି ଓଡ଼ିଆ ବିଦ୍ୟାଳୟଗୁଡ଼ିକରେ ପଦକ୍ଷେପ ନିଆଯାଆନ୍ତା ଏବଂ ଅଭିଭାବକମାନଙ୍କ ସହିତ ଶିକ୍ଷକମାନଙ୍କର ଆଲୋଚନା ହୁଅନ୍ତା, ତା'ହେଲେ ପିଲାମାନଙ୍କର ସ୍କୁଲ ଯିବାକୁ ଏତେ ଅନିଚ୍ଛୁକ ହୁଅନ୍ତେ ନାହିଁ ବୋଲି ମୋର ଧାରଣା।

ଆମେ ବୟୋଜ୍ୟେଷ୍ଠମାନେ ଓଡ଼ିଆ ଭାଷାର ଉନ୍ନତି ପାଇଁ ଯେତେ ଯତ୍ନଶୀଳ ହେଲେ ମଧ୍ୟ ଯଦି ଶିଶୁ-ପିଢ଼ିଙ୍କୁ ଓଡ଼ିଆ ଭାଷା ଜ୍ଞାନଦାନ କରିବାରେ ମନ ନ ଦେବା, ତେବେ ଭାଷାର ସୁରକ୍ଷା ହୋଇପାରିବ ନାହିଁ।

--ଅନସୂୟା ନନ୍ଦ

---

**ସାଧାରଣଜ୍ଞାନ ପରୀକ୍ଷାର ଉତ୍ତର**-- ୧। ଆମେରିକାର ଷ୍ଟିଫେନ୍ ଜବସ୍(Stephen Jobbs), ୨। ମାଣ୍ଡ୍ରେକ୍ (Mandrake), ୩। ଶିବସମୁଦ୍ରମ୍ ପ୍ରକଳ୍ପ, ୪। ଫୁ ଦୋରଜୀ(Phu Dorjee), ୫। ବାଲେଶ୍ୱର, ୬। କୋକାକୋଲା(Coca-cola), ୭। ସକ୍ରେଟିସ୍, ୮। ସାଇବେରିଆର ବୈକାଲ୍ ହ୍ରଦ, ୯। ୱିଲିୟମ୍ ଫକ୍‌ନର୍ (William Faulkner), ୧୦। ଟ୍ୟୁନିସିଆ।



# ଗଙ୍ଗାର ଜଳ



ଶ୍ରୀ ରାଜକିଶୋର ପାଢ଼ୀ

ପାଣି ଢାଳୁଛନ୍ତି ଜବାହର ହାତ ଧୋଉଛନ୍ତି ମହାତମା
ଦରକାର ଠାରୁ ଅଧିକା ଖରଚ କରନ୍ତିନି ଗାଂଧି ଜମା।
ହାତ ସରିଲାଣି ଧୁଆ ଜବାହର ଢାଳି ଚାଲିଛନ୍ତି ପାଣି
କେତେ ବେଶୀ ପାଣି ଢାଳି ହେଇଗଲା ପାରୁନାହାନ୍ତି ସେ ଜାଣି ।

ରାଗନ୍ତିନି ଗାଂଧି ସହଜରେ କିଂତୁ ଦୁଃଖରେ ଉଠିଲେ ରାଗି
କହିଲେ 'ନଷ୍ଟ କରି ଏତେ ପାଣି ହେଲ ଅପରାଧ ଭାଗୀ ।'
ନେହେରୁ କହିଲେ 'ଗଙ୍ଗାରେ କେତେ ବହିଯାଉଅଛି ପାଣି
ଗାଂଧି ଚାହିଁଲେ ଧୋଇଦେବୁ ତାଙ୍କ ପାଦ ନଈଟିଏ ଆଣି।'

କହିଲେ ଗାଂଧି 'ନଈ ବହୁଛି କି କେବଳ ମୋ'ରି ପାଇଁ
ନଈ ପାଣିରେ କି ଭାଗ ଗଛଲତା ଜନପ୍ରାଣୀଙ୍କର ନାହିଁ!
ଏ ଧରଣୀ ମାଆ ଦରକାର ଯାହା ସେତିକି କରଇ ଦାନ
ଲୋଭ କଲେ ଆମେ ସବୁ ସୁଖଶିରୀ ହୋଇଯିବ ଲୋକସାନ।

ବିନ୍ଦୁଏ ତମେ ଗଙ୍ଗାର ଜଳ ବୃଥାରେ ଦିଅନା ଢାଳି
ଆଗାମୀକାଲିର ସୁଖ ସପନକୁ ଆଜି ଦିଅନାହିଁ ଜାଳି।'

*କୋଟପୁର, ଯାଜପୁର- ୭୫୫୦୦୮*



# ୨୦୧୪ ମସିହାର ସମ୍ମାନିତ କୃତୀ ଲେଖକବୃନ୍ଦ



## ଶ୍ରୀଯୁକ୍ତ ଜେନାମଣି ଲକ୍ଷ୍ମୀକାନ୍ତ

ଭଦ୍ରକର ଗୋପବନ୍ଧୁ ନଗରଠାରେ ୧୯୪୫ ମସିହା ମାର୍ଚ୍ଚ ୧୬ ତାରିଖରେ ଜନ୍ମ। **ପିତା-** ୰ବୈଷ୍ଣବ ଜେନା, **ମାତା-** ୰ଅନ୍ନପୂର୍ଣ୍ଣା ଦେବୀ

**ବର୍ତ୍ତମାନର ଠିକଣା-** ୧୯୦, ସ୍ୱର୍ଣ୍ଣାଦ୍ରି ନିଳୟ, ଲୁଇସ ରୋଡ୍, ଭୁବନେଶ୍ୱର।

**ଶିକ୍ଷାଗତ ଯୋଗ୍ୟତା-** ବାଲ୍ୟ ଓ ଉଚ୍ଚଶିକ୍ଷା ସମାହିତ ହୋଇଥିଲା ଯଥାକ୍ରମେ ଗୋପବନ୍ଧୁ ନଗର ଉଚ୍ଚ ଇଂରାଜୀ ବିଦ୍ୟାଳୟ, ଭଦ୍ରକ ସ୍ୱୟଂଶାସିତ ମହାବିଦ୍ୟାଳୟ, ରେଭେନ୍ସା ମହାବିଦ୍ୟାଳୟରେ। ଏହାପରେ କଲିକତା ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଶିକ୍ଷା ସମାପ୍ତ କରିଥିଲେ । ୧୯୬୫ ମସିହାରେ ଓଡ଼ିଶା ଶ୍ରମ ପ୍ରଶାସନ ସେବାରେ ଯୋଗଦାନ କରି କର୍ତ୍ତବ୍ୟ ନିଷ୍ପାଦନ ଉତ୍ତାରୁ ୨୦୦୩ରେ ଅବସର ଗ୍ରହଣ ।

କିଶୋର ବୟସରୁ ଆବୃତ୍ତି, ବିତର୍କ ଇତ୍ୟାଦିରେ ଭାଗ ନେଉଥିଲେ। ଟୁଆଁଟୁଇଁ, ମୋ ଦେଶ, ସମାଜ, ମୀନାବଜାରରେ ତାଙ୍କ ଗଳ୍ପ ଓ କବିତା ପ୍ରକାଶିତ ହୋଇ ଉଚ୍ଚ ପ୍ରଶଂସିତ ହୋଇଥିଲା । ଆକାଶବାଣୀ ଓ ଦୂରଦର୍ଶନରେ ଶିଶୁ କିଶୋର କାର୍ଯ୍ୟକ୍ରମରେ ତାଙ୍କର ରଚିତ ଲେଖା ବହୁବାର ପ୍ରସାରିତ। ଏତଦ୍‌ବ୍ୟତୀତ ସଂସାର, ଶିଶୁଲେଖା, କଣ୍ଢେଇ, କାଇଁଚ, ଟିକିପିଲା, ମନପବନ, ଝୁମୁକା ଇତ୍ୟାଦିରେ ଅନେକ ଐତିହାସିକ, ଜ୍ଞାନବର୍ଦ୍ଧକ, ବୈଦିକ ଲେଖା ଲେଖି ଦୀର୍ଘ ୫ ଦଶନ୍ଧି ଧରି ସାରସ୍ୱତ ସାଧନା ଅବ୍ୟାହତ। ବହୁ ସାହିତ୍ୟ ସଂସ୍କୃତି ଅନୁଷ୍ଠାନ ତରଫରୁ ସମ୍ବର୍ଦ୍ଧିତ ଓ ସମ୍ମାନିତ।

**ପ୍ରକାଶିତ ପୁସ୍ତକ-** ପିଲାଙ୍କ ମନଛୁଆଁ କାହାଣୀ, ଶିଶୁପ୍ରିୟ ବାପୁ ଓ ଚାଚା ନେହେରୁ, ପିଲା ନୁହେଁ ହୀରା ସିଏ, କୁନାମୁନା ଚାଲ ବୁଲିଯିବା ଚିଡ଼ିଆଖାନା, ପକ୍ଷୀଜଗତର ଜୀବନଚର୍ଯ୍ୟା ଇତ୍ୟାଦି ପ୍ରକାଶିତ । ⁂



## ନିର୍ମଳା କୁମାରୀ ମହାପାତ୍ର

**ଜନ୍ମ-** ୨୫. ୧୦. ୧୯୫୨ ମସିହାରେ। ପିତା- ୰କାଶୀନାଥ ମହାପାତ୍ର, ମାତା- ୰କ୍ଷୀରତନୟା ମହାପାତ୍ର

**ଶିକ୍ଷାଗତ ଯୋଗ୍ୟତା-** ଓଡ଼ିଆ ଓ ଇତିହାସରେ ସ୍ନାତକୋତ୍ତର ପରେ ଏମ୍.ଇଡି., ଏଲ୍.ଏଲ୍.ବି, ଡିପ୍-ଇନ୍-ମାଲୟାଲମ୍ ଓ ହିନ୍ଦୀରେ କୋବିଦ ଶିକ୍ଷାଲାଭ।

**ବୃତ୍ତି-** ଓଡ଼ିଶା ରାଜ୍ୟ ସରକାରଙ୍କର ବିଦ୍ୟାଳୟ ଶିକ୍ଷା ଓ ଶିକ୍ଷକ-ଶିକ୍ଷା କ୍ଷେତ୍ରରେ ୩୩ ବର୍ଷ ଶିକ୍ଷକତା ପରେ ସମ୍ପ୍ରତି ଅବସର ନେଇ ପାଠ୍ୟପୁସ୍ତକ ରଚନା, ସମୀକ୍ଷା ଆଦି କାର୍ଯ୍ୟରେ ଅଂଶଗ୍ରହଣ।

**ବର୍ତ୍ତମାନର ଠିକଣା-** ସେକ୍ଟର ୨/୪୨୬, ନୀଳାଦ୍ରି ବିହାର, ଭୁବନେଶ୍ୱର-୨୧।

**ପ୍ରକାଶିତ ପୁସ୍ତକ-** ତୁମ ପାଇଁ ଗୀତ ଓ କବିତା, ତୁମ ପାଇଁ ଯାଦୁଘର, ପ୍ରତିଭାର ଝଲକ, କାଳଜୟୀ, ସରୀସୃପ ଅଧିବେଶନ, ବିଜ୍ଞାନର ଜୟଯାତ୍ରା, ତମିଲନାଡୁ ଲୋକକଥା ଓ କର୍ଣ୍ଣାଟକର ଲୋକକଥା ଇତ୍ୟାଦି।

ନିବନ୍ଧ ରଚନାରେ ରାଜ୍ୟସ୍ତରୀୟ ପ୍ରଥମ/ଦ୍ୱିତୀୟ ସ୍ଥାନ ଅଧିକାର କରିଛନ୍ତି । ଏବେ ମଧ୍ୟ ଗବେଷଣାରତ ।

**ସମ୍ମାନ-** ଲୋକ ସମ୍ପର୍କ, ସୂଚନା ଓ ପ୍ରସାରଣ ବିଭାଗର ପ୍ରବନ୍ଧ ପାଇଁ ପ୍ରଥମ ପୁରସ୍କାର । ଓଡ଼ିଶା ଲେଖିକା ସଂସଦ ସମ୍ମାନ, ରାଜଶ୍ରୀ ସ୍ମୃତି ସମ୍ମାନ, କୁଆଁତାରା ସମ୍ମାନ, ପରଶମଣି ପାଠକ ସମ୍ମାନ, ଯାଜ୍ଞସେନୀ, ସାନୁମାନୁଙ୍କ କଣ୍ଢେଇ ସମ୍ମାନ, ଝୁମୁକା ସମ୍ମାନ ଇତ୍ୟାଦିରେ ସେ ବିଭୂଷିତା । ସର୍ବୋପରି ପ୍ରଫେସନାଲ ଓମେନ୍ସ ଆଡଭାଇଜରୀ ବୋର୍ଡ, ଆମେରିକାନ ଜିଓଗ୍ରାଫିକାଲ୍ ସୋସାଇଟି ଦ୍ୱାରା ସମ୍ମାନିତ । ✲✲



## ଶ୍ରୀଯୁକ୍ତ ପୀତାମ୍ବର ମିଶ୍ର

୧୯୫୦, ଅପ୍ରେଲ ୨୧ ତାରିଖରେ ଭଦ୍ରକ ଜିଲ୍ଲାର ବାସୁଦେବପୁର ଥାନା, ବାଗଦା ବିନାୟକପୁର ଗ୍ରାମରେ ଜନ୍ମ । **ପିତା-** ✓ ଈଶ୍ୱର ଚନ୍ଦ୍ର ମିଶ୍ର **ମାତା-** ✓ ଜାହ୍ନବୀ ମିଶ୍ର ।

ସମାଜ ସେବା ସହ ସାହିତ୍ୟ ସାଧନା । ଆଧ୍ୟାତ୍ମିକ ପୁସ୍ତକ ଅଧ୍ୟୟନ । ବର୍ତ୍ତମାନ ମଧ୍ୟ ସମାଜସେବା ସହ ଧର୍ମସମ୍ବନ୍ଧୀୟ ଚିନ୍ତନରେ ବ୍ରତୀ ଅଛନ୍ତି ।

**ବୃତ୍ତି-** ୧୯୮୨ ମସିହାରୁ ଆକାଶବାଣୀ କଟକ କେନ୍ଦ୍ରର ସ୍ୱୀକୃତିପ୍ରାପ୍ତ କଳାକାର । ଏହାର ସଂଗୀତ ବିଭାଗ ପାଇଁ ବହୁ ଆଧୁନିକ ଓ ଭକ୍ତି ସଂଗୀତ ଲେଖା ବ୍ୟତୀତ ଶିଶୁ ବିଭାଗ ପାଇଁ ସଂଗୀତ ରୂପକ-- ମାଟି ଆମରି ମାଆ, ଆ'ରେ ମେଘ ଆ', ବାଇଚଢ଼େଇରେ ବାଇଚଢ଼େଇ ଏବଂ ନାଟକ ଡାକମୁନ୍ସୀ ଓ ପ୍ରତିରୂପ ସଂଗୀତ ରୂପକ ଅନ୍ୟତମ ।

**ସମ୍ବର୍ଦ୍ଧନା-** ସୁନାଭଉଣୀ, ଅନ୍ୱେଷା ସାହିତ୍ୟ ସଂସଦ, ବିଭାବନା ସମ୍ମାନ, ଅମ୍ବିକା ସାହିତ୍ୟ ସମ୍ମାନ, ଅସ୍ତରାଗ ସାହିତ୍ୟ ସଂସ୍କୃତି ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ ଏବଂ ଓଡ଼ିଶା ଶିଶୁ ସାହିତ୍ୟ ଗବେଷଣା ପରିଷଦ ଭଦ୍ରକରେ ବହୁବାର ଅଂଶଗ୍ରହଣ ।

**ବୃତ୍ତି-** ଉତ୍କଳ ସମ୍ମିଳନୀ ଓ ଓଡ଼ିଶା ଗୀତିକବି ସମାଜର ଆଜୀବନ ସଭ୍ୟ ସହିତ ଅନେକ ଅନୁଷ୍ଠାନ ସହିତ ଜଡ଼ିତ ହୋଇ ଏ ପର୍ଯ୍ୟନ୍ତ ସାହିତ୍ୟ ସେବାରେ ନିଜକୁ ନିୟୋଜିତ ରଖିଛନ୍ତି । ✲✲

---




୨୯।୯-- ବିଶିଷ୍ଟ ମନସ୍ତତ୍ତ୍ୱବିତ୍ ପ୍ରଫେସର ରାଧାନାଥ ରଥଙ୍କର ୯୪ ବର୍ଷରେ ମୃତ୍ୟୁ । ସ୍ନାତକୋତ୍ତର ଶିକ୍ଷା ସମାପ୍ତ ପରେ ସେ ରେଭେନସା କଲେଜରେ ଅଧ୍ୟାପକ ଭାବେ ଚାକରି ଜୀବନ ଆରମ୍ଭ କରିଥିଲେ ।

--ବିଶିଷ୍ଟ ଶିକ୍ଷାବିତ୍ ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ରଙ୍କର ୯୨ ବର୍ଷରେ ମୃତ୍ୟୁ ।

୯।୧୦-- ଓଡ଼ିଶାର ବିଶିଷ୍ଟ ଗଣନାକାର ତଥା କୋହିନୂର ପ୍ରେସ୍ ଦ୍ୱାରାପ୍ରକାଶିତ ଜଗନ୍ନାଥ ପାଞ୍ଜିର ବିଷ୍ଣୁ ପ୍ରସାଦ ଖଡ଼ିରତ୍ନଙ୍କର ୮୪ ବର୍ଷରେ ପରଲୋକ ।

୧୯।୧୦--ପୂର୍ବତନ ମନ୍ତ୍ରୀ ତଥା କଂଗ୍ରେସର ନେତା ଲକ୍ଷ୍ମଣ ମଲ୍ଲିକଙ୍କର ୮୮ ବର୍ଷରେ ପରଲୋକ ।

---

ଅଛି-ନାହିଁର ଉତ୍ତର-- ୧। ଗାଈର ଗୋଟିଏ ଖୁରା ଭିନ୍ନ, ୨। ବାଲ୍‌ଟିର ତଳା ଭିନ୍ନ ଭିନ୍ନ, ୩। ଟାଇଲ୍ ଛାତର ମଝି ଧାଡ଼ି ଅସମାନ, ୪। ଗାଈ ଲାଞ୍ଜ ଅଗ କଳା ଓ ଧଳା, ୫। ଗାଈ ଦୁହାଁଳି ବେକରେ ସୂତା ନାହିଁ, ୬। ଗୋଟିଏ ଗାଈର ପଘା ନାହିଁ, ୭। ତଳେ ଘାସ ବୁଦା ଗୋଟିଏ ନାହିଁ ।

## ଶବ୍ଦଧନ୍ଦା-ନଭେମ୍ବର, ୨୦୧୪

ଶ୍ରୀ ବିଧୁର କୁମାର ଦାଶ

**୧ ।** କାଗଜରେ ବା କାର୍ଡରେ ଘର କାଟି ଉତ୍ତର ଲେଖନ୍ତୁ ।
**୨ ।** ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।
**୩ ।** ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।
**୪ ।** ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।
**୫ ।** ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।
**୬ ।** ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨ । ୧୧ । ୨୦୧୪
**୭ ।** ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | | |
|---|---|---|---|---|---|---|
| ୧ | ୨ | | ୩ | ❀ | ୪ | ୫ |
| | | ❀ | | ❀ | ❀ | |
| ୬ | | ❀ | ୭ | | | ୮ |
| ❀ | ❀ | ୯ | | ୧୦ | | |
| ୧୧ | ୧୨ | | ❀ | | ❀ | |
| ❀ | | ❀ | ୧୩ | | ୧୪ | |
| ୧୫ | | | | ❀ | | ❀ |

### ସୂଚନା

**ବାମରୁ ଡାହାଣ--** ୧ । ମଥୁରା ଅଞ୍ଚଳ (୪), ୪ । ବୁଧ ଗ୍ରହ (୨), ୬ । ଯୁଦ୍ଧ (୨), ୭ । ବିରାଟ ରାଜାଙ୍କ ଶ୍ୟାଳକ (୩), ୯ । କୁବେରଙ୍କ ପୁତ୍ର (୫), ୧୧ । ଗଧ (୩), ୧୩ । ବଳୀ ରାଜା (୪), ୧୪ । ଦ୍ରୌପଦୀ (୪) ।

**ଉପରୁ ତଳ--** ୧ । ଘୁଷୁରି (୩), ୨ । କୋକିଳ (୩), ୩ । ଓଲୁଅ (୪), ୫ । ଧାନ ମାପିବା ପାତ୍ର (୨), ୮ । ବସ୍ତୁର ଭାର (୪), ୯ । ଆକାଶ (୨), ୧୦ । ପକ୍ଷୀ ଧ୍ୱନି (୩), ୧୨ । ଯେ ସବୁ ଜାଣେ (୩), ୧୩ । ଦାତା (୨), ୧୪ । ସୁଗନ୍ଧ ତୃଣ ବିଶେଷ (୨) ।

*ଧଣ୍ଡାମୁଣ୍ଡା, ବଲାଙ୍ଗୀର*

---

**ଅକ୍ଟୋବର ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧ । ପଣ୍ଡିତବାସର, ୨ । ଅବଲୋକନ / ପରିଦର୍ଶନ ୫ । ବସନ, ୮ । ମକର, ୯ । ନଳକ, ୧୦ । ନନ୍ଦନନ୍ଦନ, ୧୧ । ବସନ୍ତ ପଞ୍ଚମୀ ।

**ଉପରୁ ତଳ--** ୧ । ପବନ ବାହନ, ୨ । ଅବଗାହନ / ପରିଶୀଳନ ୩ । ନରବାହନ, ୪ । ଶ୍ରୀରାମ ନବମୀ, ୫ । ବମନ, ୬ । ସକଳ, ୭ । ନରକ ।

---

ସମ୍ପୂର୍ଣ୍ଣ ଠିକ୍ ଉତ୍ତରଦାତାଙ୍କ ନାମ-- **ସ୍ୱରୂପ ସୁବୁଦ୍ଧି,** ପୁରୀ ଜିଲ୍ଲା ସ୍କୁଲ, ପୁରୀ; **ରାଜକିଶୋର ସାହୁ,** ଓଡ଼ଗାଁ, ନୟାଗଡ; **ଶାଶ୍ୱତୀ ଅର୍ଘ୍ୟରୂପା ସାହୁ,** (୮ମ), ସରସ୍ୱତୀ ଶିଶୁ ବିଦ୍ୟା ମନ୍ଦିର, ଯାଜପୁର; **ଲକ୍ଷ୍ମୀପ୍ରିୟା ଦାସ,** ସୁଦର୍ଶନ ନଗର, ପୁରୀ; **ଅମର କୁମାର ସିଁ,** ଉଲୁଣ୍ଡା, ସୁବର୍ଣ୍ଣପୁର ।

---

# ପୃଥ୍ୱୀ କ୍ଷଣକ୍ଷଣକେ ଆନ

## ଓଡ଼ିଶା ଖବର

୫।୧୦-- ସ୍ପେନ୍‌ରେ ଅନୁଷ୍ଠିତ 'ଅଷ୍ଟମ ଆନ୍ତର୍ଜାତିକ ଆର୍ଥ-ସାଇନସ୍ ଅଲମ୍ପିଆଡ୍- ୨୦୧୪ରେ ଓଡ଼ିଆ ଛାତ୍ର ସୌରଜିତ ସାହୁଙ୍କର କାଂସ୍ୟ ପଦକ ହାସଲ।

୧୦। ୧୦--ସାମୁଦ୍ରିକ ଝଡ଼ 'ହୁଦ୍‌ହୁଦ୍' ଆଶଙ୍କାରେ ୨୭୨୮୬ ଲୋକ ସ୍ଥାନାନ୍ତରିତ ଏବଂ ୧୨ଟି ଟ୍ରେନ୍ ବାତିଲ ଏବଂ ବାତ୍ୟା ପ୍ରଭାବରେ କୋରାପୁଟ, ଗଜପତି, ରାୟଗଡ଼ା, ନବରଙ୍ଗପୁର, ମାଲକାନାଗିରି କ୍ଷତିଗ୍ରସ୍ତ।

୧୪।୧୦-- ଜଷ୍ଟିସ୍ ଶତ୍ରୁଘ୍ନ ପୂଜାହାରୀ ଓଡ଼ିଶା ହାଇକୋର୍ଟର ସ୍ଥାୟୀ ବିଚାରପତି ନିଯୁକ୍ତ।

୧୫।୧୦--ରାଜ୍ୟ ସରକାରୀ କର୍ମଚାରୀଙ୍କର ୭ ପ୍ରତିଶତ ମହଙ୍ଗାଭତ୍ତା ବୃଦ୍ଧି।

୧୫।୧୦--ସମ୍ବଲପୁର ବିଶ୍ୱବିଦ୍ୟାଳୟ କୁଳପତି ଭାବେ ପ୍ରଫେସର ଚିତ୍ତରଂଜନ ତ୍ରିପାଠୀ ନିଯୁକ୍ତ।

୨୦।୧୦-- କନ୍ଧମାଳ ଲୋକସଭା ଉପନିର୍ବାନରେ ବି.ଜେ.ଡି. ପ୍ରାର୍ଥିନୀ ପ୍ରତ୍ୟୁଷା ରାଜେଶ୍ୱରୀ ସିଂ ଜୟଯୁକ୍ତ ।

## ଭାରତ ଖବର

୨୪।୯-- ମହାକାଶ ଗବେଷଣା ଇତିହାସରେ ଏକ ନୂଆ ଅଧ୍ୟାୟ ଆରମ୍ଭ କରି ବିଶ୍ୱର ଏକମାତ୍ର ଦେଶ ଭାବେ ଭାରତର ପ୍ରଥମ ଚେଷ୍ଟାରେ ମଙ୍ଗଳ ଗ୍ରହ ଅଭିଯାନ ସଫଳ।

୨୫।୯-- ଆସାମ ମେଘାଳୟର ପ୍ରଳୟଙ୍କରୀ ବର୍ଷାରେ ମୃତ୍ୟୁ ସଂଖ୍ୟା ୩୭ରୁ ଊର୍ଦ୍ଧ୍ୱ।

୨୬।୯-- ମହାରାଷ୍ଟ୍ର ବିଧାନସଭା ପାଇଁ ଆସନ ବୁଝାମଣା ନ ତୁଟିବାରୁ ବିଜେପି-ଶିବସେନା ଓ କଂଗ୍ରେସ-ଏନ୍.ସି.ପି ସଂପର୍କ ଛିନ୍ନ ଓ ମହାରାଷ୍ଟ୍ରର ମୁଖ୍ୟମନ୍ତ୍ରୀ ପଦରୁ ପୃଥ୍ୱୀରାଜ ଚୌହାନଙ୍କର ଇସ୍ତଫା ପ୍ରଦାନ।

୨୭।୯-- ଆନ୍ତର୍ଜାତିକ ଶିଶୁ ଶାନ୍ତି ପୁରସ୍କାର ପାଇଁ ଚଳିତ ବର୍ଷ ୩ ଜଣ ମନୋନୀତ। ସେଥିମଧ୍ୟରୁ ଭାରତୀୟ ବଂଶୋଦ୍ଭବ ନେହା ଅନ୍ୟତମ।

୨୮।୯-- ତାମିଲନାଡୁ ମୁଖ୍ୟମନ୍ତ୍ରୀ ସୁଶ୍ରୀ ଜୟଲଳିତାଙ୍କୁ ଆୟ ବହିର୍ଭୂତ ସଂପତ୍ତି ଠୁଳ ମାମଲାରେ ୪ ବର୍ଷ ଜେଲ୍ ଦଣ୍ଡାଦେଶ ସହିତ ୧୦୦ କୋଟି ଟଙ୍କାର ଜୋରିମାନା ଧାର୍ଯ୍ୟ।

୨।୧୦--୨୦୧୯ ସୁଦ୍ଧା ଏକ 'ସ୍ୱଚ୍ଛ ଭାରତ' ଗଠନ ଉଦ୍ଦେଶ୍ୟରେ ଅଭିଯାନ ଆରମ୍ଭ।

୧୦।୧୦--ଭାରତର କୈଳାସ ସତ୍ୟାର୍ଥୀ ଓ ପାକିସ୍ତାନର ମଲାଲା ୟୁସୁଫଜାଇ ଶାନ୍ତି ପାଇଁ ୨୦୧୪ମସିହାର ନୋବେଲ ଶାନ୍ତି ପୁରସ୍କାର ପାଇଁ ମନୋନୀତ।

୧୯।୧୦--ଆଇପିଏଲ୍‌ର ପୂର୍ବତନ କମିଶନର ଲଳିତ ମୋଦି ଆରସିଏ ସଭାପତି ପଦରୁ ବହିଷ୍କୃତ।

୧୩।୧୦--ସାମୁଦ୍ରିକ ଝଡ଼ ଯୋଗୁଁ ଆନ୍ଧ୍ରରେ ୧୦ ହଜାର କୋଟି ଟଙ୍କାର କ୍ଷତି। ଶ୍ରୀକାକୁଲମ୍, ବିଶାଖାପାଟଣା ଓ ବିଜୟ ନଗରମ୍‌ରେ ବ୍ୟାପକ କ୍ଷୟକ୍ଷତି ଆକଳନ।

୧୫।୧୦--ମହାରାଷ୍ଟ୍ର, ହରିୟାଣାର ବିଧାନସଭା ନିର୍ବାଚନ ପାଇଁ ମତଦାନ ସମ୍ପନ୍ନ। ମହାରାଷ୍ଟ୍ରରେ ୬୪% ଓ ହରିୟାଣାରେ ୭୬% ମତଦାନ।

୧୫।୧୦--ପେଶାଦାର ଫୁଟ୍‌ବଲ୍ ଟୁର୍ଣ୍ଣାମେଣ୍ଟ୍ ଆଇ.ଏସ୍.ଏଲ୍. କଲିକତାରେ ଉଦ୍‌ଘାଟିତ।

୧୬।୧୦--ଅରବିନ୍ଦ ସୁବ୍ରମଣ୍ୟମ୍ ଅର୍ଥ ମନ୍ତ୍ରାଳୟର ମୁଖ୍ୟ ଅର୍ଥ ପରାମର୍ଶଦାତା ନିଯୁକ୍ତ।

୨୦।୧୦--ମହାରାଷ୍ଟ୍ର ଓ ହରିୟାଣା ନିର୍ବାଚନରେ ବି.ଜେ.ପି.ର ସର୍ବାଧିକ ପ୍ରାର୍ଥୀ ଜୟଯୁକ୍ତ। ହରିୟାଣାରେ ପୂର୍ଣ୍ଣ ସଂଖ୍ୟା ଗରିଷ୍ଠତା ଲାଭ।

## ବିଦେଶ ଖବର

୨୧।୯--ପୂର୍ବତନ ଅର୍ଥମନ୍ତ୍ରୀ ଆସ୍ରଫ ଘାନି ଆଫଗାନିସ୍ଥାନର ନୂତନ ରାଷ୍ଟ୍ରପତି ଏବଂ ପାକିସ୍ତାନର ଆଇ.ଏସ୍.ଆଇ.ର ମୁଖ୍ୟ ଭାବେ ଲେଫ୍‌ଟ୍‌ନାଣ୍ଟ୍ ଜେନେରାଲ ରିଜୱାନ୍ ଅଖ୍‌ତାର ନିଯୁକ୍ତ।

୯।୧୦--୨୦୧୪ ବର୍ଷ ପାଇଁ ଫ୍ରାନସ୍‌ର ଔପନ୍ୟାସିକ ପ୍ୟାଟ୍ରିକ ମୋଡିଆନୋଙ୍କୁ ଏବଂ ଦୁଇଜଣ ଆମେରିକୀୟ ଓ ଜର୍ମାନୀ ବୈଜ୍ଞାନିକଙ୍କୁ ରସାୟନରେ ନୋବେଲ୍ ପୁରସ୍କାର ପାଇଁ ମନୋନୀତ ।

୧୫।୧୦--ଭାରତ ଓ ଫିନ୍‌ଲ୍ୟାଣ୍ଡ୍ ମଧ୍ୟରେ ୧୯ଟି ଚୁକ୍ତି ସ୍ୱାକ୍ଷରିତ।

--ହୁଦ୍‌ହୁଦ୍ ଯୋଗୁଁ ନେପାଳ ଝଡ଼ରେ ୩ ଭାରତୀୟଙ୍କ ସମେତ ୩୨ ମୃତ।

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph: 2420075, 2422597